# ପ୍ରିୟ ଜେପି

## ଜଗନ୍ନାଥ ପ୍ରସାଦ ଦାସଙ୍କୁ ଚିଠି

ସଂପାଦନା

**ସୁମନ୍ୟୁ ଶତପଥୀ**





ଭୁବନେଶ୍ୱର

# ପ୍ରିୟ ଜେପି

## ଜଗନ୍ନାଥ ପ୍ରସାଦ ଦାସଙ୍କୁ ଚିଠି

ଚୟନ, ସଂପାଦନା ଓ ମୁଖବନ୍ଧ

**ସୁମନ୍ୟୁ ଶତପଥୀ**



# ପ୍ରିୟ ଜେପି

ଜଗନ୍ନାଥ ପ୍ରସାଦ ଦାସଙ୍କୁ ଚିଠି

ସଂପାଦନା : ସୁମନ୍ୟୁ ଶତପଥୀ

ପ୍ରକାଶକ : ଶିକ୍ଷାସନ୍ଧାନ,
ଏନ୍.ଡ଼ି.-୭, ଭି.ଆଇ.ପି ଏରିଆ, ଆଇ.ଆର୍.ସି ଭିଲେଜ,
ଭୁବନେଶ୍ୱର - ୭୫୧୦୦୩
ଫୋନ୍-୦୬୭୪-୨୫୫୬୧୦୯, ୨୫୫୦୬୫୬

ମୁଦ୍ରଣ : ଶିକ୍ଷାପ୍ରକାଶନୀ,
ଏନ୍.ଡ଼ି.-୭, ଭି.ଆଇ.ପି ଏରିଆ, ଆଇ.ଆର୍.ସି ଭିଲେଜ,
ଭୁବନେଶ୍ୱର-୭୫୧୦୦୩

ପ୍ରକାଶନ : ମେ, ୨୦୧୧

ମୂଲ୍ୟ : ଟ. ୧୨୦/-

ଆଇ.ଏସ୍.ବି.ଏନ୍ : ୧୩ :୯୭୮-୮୧-୮୭୯୮୨-୬୬-୧

---

## *PRIYA JP*

Jagannath Prasad Dasnku Chithi

Editor - **Sumanyu Satpathy**

Publisher :
**Sikshasandhan,**
ND-7, VIP Area, IRC Village,
Bhubaneswar

Printed at :
**Siksha Prakashani,**
ND-7, VIP Area, IRC Village,
Bhubaneswar

First Edition - May, 2011

I.S.B.N.-13 :978-81-87982-66-1

Price : Rs. 120/-

# ସୂଚୀପତ୍ର

# ନିଜ କଥା

ମୁଁ ସବୁବେଳେ ଭାବୁଥିଲି ଯେ ଜଣକ ପାଖକୁ ଜଣକର ଚିଠି କେବଳ ସେଇମାନଙ୍କର, ନିଜର ସୁଖ ଦୁଃଖ ଭଳି । ପରେ କିନ୍ତୁ ମୋର ଉପଲବ୍ଧି ହେଲା ଯେ ସୁଖ ଦୁଃଖ ଭଳି ଚିଠିକୁ ମଧ୍ୟ ବାଣ୍ଟି ଦିଆ ଯାଇପାରେ ।

ପ୍ରାୟ ଚାଳିଶ ବର୍ଷ ହେଲା ମୋ ପାଖକୁ ଯେତେସବୁ ଚିଠି ଆସିଥିଲା ତାକୁ ମୁଁ ଫିଙ୍ଗି ନ ଦେଇ ସଞ୍ଚୟ କରି ରଖିଛି, ଏବଂ ବେଳେ ବେଳେ ତାକୁ ଓଲଟାଇ ଦେଖୁଥାଏ, ପଛକୁ ମନେ ପକାଇବା ପାଇଁ ।

ବନ୍ଧୁ ଗଣେଶ୍ୱର ମିଶ୍ର ମୋ ବିଷୟରେ 'ଓ୍ୱର୍ଡ୍‌ସ୍ ଅନ୍ କାନଭାସ୍' ଓ 'ସୃଜନ ଯାତ୍ରା' ବହି ଲେଖିଲା ବେଳେ ମୋ ପାଖରେ ଥିବା ଚିଠି ସବୁ ଦେଖିଥିଲେ ଏବଂ ସେଥିରୁ କିଛି ତାଙ୍କ ବହିରେ ବ୍ୟବହାର କରିଥିଲେ । ସେ ହିଁ ପ୍ରଥମେ ସୂଚନା ଦେଇଥିଲେ ଚିଠି ସବୁ ପ୍ରକାଶ କରାଯିବା ଉଚିତ ବୋଲି । ପରବର୍ତ୍ତୀ ସମୟରେ ବନ୍ଧୁ ସୁମନ୍ୟୁ ଶତପଥୀ ମଧ୍ୟ ସେହିଭଳି ପ୍ରସ୍ତାବ ଦେଇଥିଲେ, ଏବଂ ଏ ବହିର ଶ୍ରେୟ ତାଙ୍କରି ।

ସେମାନଙ୍କର ଆଗ୍ରହରେ ସୁମନ୍ୟୁ ଶତପଥୀ ବାଛିଥିବା ଚିଠି ମୁଁ ଅନ୍ୟମାନଙ୍କ ଆଗରେ ରଖିବା ପାଇଁ ସାହସୀ ହେଲି । ଏ ସବୁ ଚିଠି ଲେଖି ଯେଉଁମାନେ ମତେ ଉପକୃତ କରିଛନ୍ତି, ମୁଁ ସେମାନଙ୍କ ପାଖରେ କୃତଜ୍ଞ । ଏଥିରୁ କିଛି ଚିଠିରେ ମୋ ପ୍ରତି ପ୍ରଶଂସାସୂଚକ କଥାମାନ ଅଛି । ସେ ଅତିରଞ୍ଜିତ ସଦୟ ଉକ୍ତି ସବୁ ମୋ ପ୍ରତି ଲେଖକଙ୍କର ଆଦର, ସ୍ନେହ ଓ ଉଦାରତାର ନିଦର୍ଶନ; କୌଣସି ମତେ ମୋର କୌଣସି ଗୁଣର ପ୍ରମାଣ ନୁହେଁ । ସେମାନଙ୍କର ଚିଠି ପ୍ରକାଶ ପାଇଁ ଦେଇ ଅତି ସାମାନ୍ୟ ଭାବରେ ମୁଁ ସେମାନଙ୍କର ମହାନତାକୁ ବିନମ୍ର ସମ୍ମାନ ଜଣାଉଛି ।

ଜଗନ୍ନାଥ ପ୍ରସାଦ ଦାସ

# ମୁଖବନ୍ଧ: ସମ୍ପର୍କର ପରିସର

ସୁମନ୍ୟୁ ଶତପଥୀ

In those days a letter was an event.

*A.G Gardiner*

When a man puts a letter into the post office he confidently believes... the communication he makes to his family and friends will not be read by the Post Master General... or the Secretary of State...

*A journalist in 1844*

ବହୁବର୍ଷ ପୂର୍ବେ ବିଶିଷ୍ଟ ଇଂରାଜୀ ଲଘୁନିବନ୍ଧ ଲେଖକ ଏ.ଜି. ଗାର୍ଡିନରଙ୍କର ଲେଖାଟିଏ ପଢିଥିଲି । ସେଥିରେ ଏକ କଳା ହିସାବରେ ଚିଠିଲେଖା ସଂସ୍କୃତିର କିପରି ଅଧୋପତନ ହୋଇଛି ତାର କାରଣ ଉଲ୍ଲେଖ କଲାବେଳେ ସେ "ପେନ୍ନି ପୋଷ୍ଟ" ବା ଶସ୍ତା ଡାକ ମାସୁଲର ପ୍ରବର୍ତ୍ତନକୁ ସମ୍ପୂର୍ଣ୍ଣ ଦୋଷୀ କରାଇଥିଲେ । ପରେ ଅନ୍ୟାନ୍ୟ ଲେଖକମାନେ ଟେଲିଫୋନର ଆବିର୍ଭାବ ପରେ ଚିଠିଲେଖା ଅଭ୍ୟାସର ଆସନ୍ନ ମୃତ୍ୟୁ ଘୋଷଣା କରିଥିଲେ । କିନ୍ତୁ ବିଂଶ ଶତାବ୍ଦୀର ମଧ୍ୟଭାଗରେ ଟେଲିଫୋନର ବହୁଳ ପ୍ରସାର ସତ୍ତ୍ୱେ ବିଶିଷ୍ଟ ବ୍ୟକ୍ତିମାନଙ୍କର ପତ୍ର ସଂକଳନ ମଧ ବୃଦ୍ଧି ପାଇଲା, ବିଶେଷ କରି ପାଶ୍ଚାତ୍ୟ ଦେଶମାନଙ୍କରେ । ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଦୈନନ୍ଦିନ ଜୀବନ ଯାପନର ଗତି ଦ୍ରୁତତର ହେବା ସଙ୍ଗେ ସଙ୍ଗେ ସମୟ ଅଭାବ ହେତୁ ଚିଠିଲେଖା ଅଭ୍ୟାସର ପୁଣି ଆସନ୍ନ ମୃତ୍ୟୁ ହେବ ବୋଲି ଅନେକେ ଘୋଷଣା କରିଥିଲେ । କହିବା ବାହୁଲ୍ୟ, ଏବେ ମଧ ଚିଠିଲେଖା ଜୀବିତ ରହିଛି । ଇଂରାଜୀ ସାହିତ୍ୟିକ ଏଭଲିନ୍ ୱ (୧୯୦୩-୧୯୬୬)ଙ୍କ ପତ୍ର ସଂକଳକ ମାର୍କ ଏମୋରି ଯଥାର୍ଥରେ କହିଛନ୍ତି, "ପତ୍ରଲେଖନ କଳାକୁ ଯେତେଥର ମୃତ ଘୋଷିତ କରାଯାଇଛି ଯେତେଥର ଉପନ୍ୟାସର ମୃତ୍ୟୁକୁ ।" ଅନୁଭୂତିରୁ ଜଣାପଡ଼େ, ଏବେର ଉପନ୍ୟାସର

ଚଳଣି ଓ ବ୍ୟାପାର ଊନବିଂଶ ଶତାବ୍ଦୀ (ଯାହାକୁ କି ଉପନ୍ୟାସର ସୁବର୍ଣ୍ଣ ଯୁଗ କୁହାଯାଏ) ଅପେକ୍ଷା ଅନେକ ବେଶୀ । ପତ୍ରଲିଖନ ଅପେକ୍ଷାକୃତ ଭାବରେ କିଛିଟା ସଂକୁଚିତ ବା ଲୁକ୍କାୟିତ ସାମାଜିକ ଚଳଣି ମଧ୍ୟରେ ଅନ୍ତର୍ଗତ ହେଲେ ମଧ୍ୟ ତାର ମୃତ୍ୟୁ ସମ୍ବାଦ ଲେଖିବାର ସମୟ ଆସିଯାଇଛି କହିବା ଠିକ୍ ହେବ ନାହିଁ । ଅଧୁନା ଟେଲିଫୋନର ପ୍ରଚଳନ ଗାଁ ଗହଳି ପର୍ଯ୍ୟନ୍ତ ମଧ୍ୟ ବିସ୍ତାରିତ । ମୋବାଇଲ ଓ ଇଣ୍ଟରନେଟ ତଥା ସ୍କାଇପର ପ୍ରଚଳନ ସର୍ବବ୍ୟାପ୍ତ ଏବଂ ଏଥିଯୋଗୁଁ ଚିଠିଲେଖା ଏକ କଳା ହିସାବରେ ଅନେକ କ୍ଷତିଗ୍ରସ୍ତ ହୋଇଛି ବୋଲି ଯୁକ୍ତି କରାଯାଇପାରେ । ତଥାପି ପୂର୍ବ ପରି ଆମେ ଚିଠିଲେଖାର ମୃତ୍ୟୁ ଘୋଷଣା କରି ଅଶ୍ରୁପାତ କରିବା ଏକ ରୋମାଣ୍ଟିକ ମାନସିକତାର ସୂଚନା ହିଁ ହେବ, ଯେମିତି ପ୍ରୌଢ଼ ବା ବୃଦ୍ଧମାନେ ନିଜର ବାଲ୍ୟାବସ୍ଥା ଓ ଯୌବନ ସମୟର ସ୍ମୃତିଚାରଣ କରି ଏକ ସ୍ୱର୍ଣ୍ଣଯୁଗ ଅତିବାହିତ ହୋଇ ଘୋର କଳିଯୁଗ ଆସିଯିବା କଥା କହିଥାନ୍ତି ।

ଏହି ସଂପାଦକଙ୍କ କ୍ଷୁଦ୍ର ମତରେ ଚିଠିଲେଖାର ମାଧ୍ୟମ ହୁଏତ ବଦଳିଯାଇଛି କିନ୍ତୁ ତାର ପ୍ରକୃତି ବା ପରିସର ସେମିତି କିଛି ବଦଳିନାହିଁ । ଏସ୍ ଏମ୍ ଏସ୍‌ର ସଂକ୍ଷିପ୍ତ ଓ ସାଙ୍କେତିକ ଭାଷା ଟେଲିଗ୍ରାମର ରୂପାନ୍ତର ମାତ୍ର । ସେହିପରି ସାଧାରଣତଃ ଇ-ମେଲ୍ ଦୈର୍ଘ୍ୟରେ ଛୋଟ ହେଲେ ମଧ୍ୟ ଅନେକ ପତ୍ରଲେଖକ ସୁଦୀର୍ଘ ଇ-ମେଇଲ ଲେଖିବାର ଆବଶ୍ୟକତା ଅନୁଭବ କରନ୍ତି । ପୂର୍ବେ ମଧ୍ୟ ଚିଠିର ଦୈର୍ଘ୍ୟ ବା ଲମ୍ବ ଛୋଟ କିମ୍ବା ବଡ଼ ହେଉଥିଲା । ଏଇ ସଂକଳନରେ ଅନେକ ଚିଠି ରହିଛି ଯାହାକି ବେଶ ସଂକ୍ଷେପରେ ଲେଖାହୋଇଛି । କିନ୍ତୁ ଦୁଇ ଚାରି ଧାଡ଼ିରେ ଏପରି କଥା କୁହାଯାଇଛି ଯାହା ତିନି, ଚାରି ପୃଷ୍ଠାରେ ଲେଖିଥିଲେ ମଧ୍ୟ ହୁଏତ ଏତେ ମର୍ମସ୍ପର୍ଶୀ ହୋଇପାରି ନ ଥାନ୍ତା । ଏସବୁ ପରେ ଆଲୋଚନା କରାଯିବ । ଏହି ସଂକଳନରେ କିଛି ଚିଠି ଅଛି ଯାହାର ମାଧ୍ୟମ ପାଠକେ ସହଜରେ ଠଉରେଇ ପାରିବେ ନାହିଁ, ଏଇଟି ମନିଅର୍ଡର ଫର୍ମ, ପୋଷ୍ଟ କାର୍ଡ ନା ଇ-ମେଲ । ଅବଶ୍ୟ ତାରିଖଟି ୧୯୬୦ ମସିହାର ହୋଇଥିଲେ ଚିଠିକୁ ନିଶ୍ଚିତ ଭାବେ ଇ-ମେଲ ବୋଲି ଭାବିବା କଷ୍ଟ । କିନ୍ତୁ ଇ-ମେଲ ଯୁଗ ଏକବିଂଶ ଶତାବ୍ଦୀର ଲେଖା ଏପରି ପତ୍ର ଅଛି ଯାହା ହୁଏତ ପୋଷ୍ଟକାର୍ଡ ମଧ୍ୟ ହୋଇପାରେ । ଇ-ମେଲଗୁଡ଼ିକ ପାରମ୍ପରିକ ଚିଠିଠାରୁ କୌଣସି ଗୁଣରେ ଊଣା ନୁହେଁ । କାଗଜ କଲମ ଲେଖା ବା ଟାଇପ ହୋଇଥିବା ଏବଂ ନାମ ଦସ୍ତଖତ ହୋଇଥିବା ଚିଠି ଓ କମ୍ପ୍ୟୁଟର ସ୍କ୍ରିନରେ ଲେଖା ଇ-ମେଲ ମଧ୍ୟରେ କଣ ଫରକ ଅଛି ମାଧ୍ୟମ ବ୍ୟତୀତ ? ଏପରିକି "ହେକ୍‌ଟ୍" ହୋଇଥିବା ଇ-ମେଲର ପୂର୍ବେ ନକଲି ଦସ୍ତଖତ ଥିବା ଚିଠିଠାରୁ ବିଶେଷ ଫରକ ନାହିଁ କୁହାଯାଇପାରେ ।

ପ୍ରଥମରୁ କହିରଖେ ଯେ ଏହି ସଂକଳନରେ କେବଳ ଯେ କଳାଧର୍ମୀ ଚିଠିକୁ ଏକାଠି କରାଯିବ ସେ ଅଭିପ୍ରାୟ କେବେହେଲେ ନ ଥିଲା । କୌଣସି କୌଣସି ଚିଠିରେ ଯଦି କେହି ପାଠକ କଳାତ୍ମକ ଗୁଣ ଆବିଷ୍କାର କରନ୍ତି ତାହା ଏକ ସଂଯୋଗପୂର୍ଣ୍ଣ ଖୁସିର କଥା, କିନ୍ତୁ ଚୟନ ପ୍ରକ୍ରିୟା ବା ପଦ୍ଧତିରେ ମୂଳ ଉଦ୍ଦେଶ୍ୟ ଏହା ଥିଲା ଯେ ଚିଠିର ବିଷୟବସ୍ତୁ ମନୋଜ୍ଞ, ମନୋରଞ୍ଜକ ହେବା ଉଚିତ । ତା ବ୍ୟତୀତ ଚିଠିଗୁଡ଼ିକର ଲେଖକ, ଲେଖିକାଙ୍କର ମାନସିକ ଅବସ୍ଥା ସୂଚାଇବା ତଥା ସେ ସମୟର ସାମାଜିକ ବ୍ୟବସ୍ଥା ବା ସାଂସ୍କୃତିକ ପରିସ୍ଥିତି ବିଷୟରେ କିଛି ଆଲୋକପାତ କରିବା, ଏଇ ଗୁଣ ବା ଧର୍ମ ଚିଠିଗୁଡ଼ିକୁ ବାଛିବାରେ ସାହାଯ୍ୟ କରିଛି ।

ଜେପିଙ୍କ ନିକଟରେ ଗୁଡାଏ ଆସବାବପତ୍ର ମଧ୍ୟରେ କାର୍ଟନଗୁଡ଼ିକରେ ସଞ୍ଚିତ ଥିବା ଅସଂଖ୍ୟ ଚିଠିପତ୍ର ମଧ୍ୟରୁ ଏସବୁ ବଛାଯାଇଛି ଯାହାକି "ଟିପ୍ ଅଫ୍ ଦି ଆଇସ୍‌ବର୍ଗ" କୁହାଯାଇପାରେ । ଚିଠିଗୁଡ଼ିକୁ ବିଭିନ୍ନ ଗୁଣ ଆଧାରରେ ଚୟନ କରାଯାଇଛି କିନ୍ତୁ ବିଭିନ୍ନତା ହିଁ ଗୋଟିଏ ପ୍ରଧାନ ଆଧାର ଯାହାଫଳରେ ଏଥିରେ ସନ୍ନିବେଶିତ ଚିଠିମଧ୍ୟରୁ କିଛି ଆନ୍ତରିକ ଓ ଆତ୍ମୀୟ ଚିଠି ବ୍ୟତୀତ କିଛି ଅଫିସ୍‌ର ମେମୋ ବା ନୋଟିସ ସମ୍ବନ୍ଧୀୟ, ଆଉ କିଛି ବ୍ୟବସାୟିକ ବା ପେଷାଜନିତ ଏପରିକି ଏଥିରେ ବେନାମୀ ପାଠକୀୟ ଚିଠି ମଧ୍ୟ ରହିଛି । ପ୍ରେରକମାନଙ୍କ ଚିଠି ଲେଖା ସମୟର ଅବସ୍ଥା ଓ ଅବସ୍ଥିତି ମଧ୍ୟ ବିଭିନ୍ନ । କିଏ ହୁଏତ ପୁଞ୍ଜିପତି, ଅଭିଜାତ ବା ଧନାଢ୍ୟ ବା କ୍ଷମତାପୂର୍ଣ୍ଣ ତ କିଏ ଉପେକ୍ଷିତ ସର୍ବହରା, କିଏ ଛାତ୍ର ବା ଛାତ୍ରୀ ତ କିଏ ସ୍ୱନାମଧନ୍ୟ ଅଧ୍ୟାପକ, କିଏ ପ୍ରତିଷ୍ଠିତ ଚଳଚ୍ଚିତ୍ର ନିର୍ମାତା ବା ଅଭିନେତା ତ ଆଉ କେହି ପାଣ୍ଠିବିହୀନ ଦୋଦୁଲ୍ୟମାନ ଉଦ୍ୟୋକ୍ତା । ସେମାନଙ୍କ ମଧ୍ୟରୁ ହୁଏତ କିଛି ଅନାମଧେୟ ନାଛିପୁରିଆ ଅବା ନ୍ୟୁୟର୍କର ତ କିଏ ସମ୍ବଲପୁର ଅବା ଆଉ କିଏ ଷ୍ଟକହମର ବାସିନ୍ଦା । କିଛି ବ୍ୟକ୍ତିଙ୍କ ସହିତ ଜାହାଜ ବା ଉଡାଜାହାଜରୁ ସମ୍ବନ୍ଧ ଆରମ୍ଭ ହୋଇ ବନ୍ଧୁତ୍ୱ ଆଡକୁ ଯାଇଛି ତ ଅନ୍ୟାନ୍ୟ ଅନେକ ଛାତ୍ରାବସ୍ଥାରୁ ବନ୍ଧୁ । ବିଷୟବସ୍ତୁ କଥା କହିଲେ ସେହିପରି ବିଭିନ୍ନତାର ବିସ୍ତାର ଦେଖାଯିବ । ଓଡ଼ିଆ ସାହିତ୍ୟରେ ଅଶ୍ଳୀଳତା ଏବଂ ସାହିତ୍ୟିକ ପ୍ରତି ଅନୁଦାର ବ୍ୟବହାର, ଯେପରିକି ମୃତ୍ୟୁଶଯ୍ୟାରେ ଫତୁରାନନ୍ଦ, ଏ ବିଷୟରେ ପତ୍ରାଳାପ ଯେତିକି ମର୍ମସ୍ପର୍ଶୀ, ସାହିତ୍ୟିକ ଜେପିଙ୍କ ଚେହେରାର ବେନାମୀ ପ୍ରଶଂସିକାର ଚିଠି ସେତିକି ହାସ୍ୟୋଦ୍ଦୀପକ । ଏପରିକି ତେଲ ଚାଉଳର ଦରଦାମ ବିଷୟରେ ଚିଠି ପରେ ପରେ ହୁଏତ କୌଣସି ଫିଲ୍ମ ନିର୍ମାଣ ବା ତଦ୍‌ଜନିତ ଲାଭକ୍ଷତି ବିଷୟରେ ଚିଠି ଥିବା ଅସମ୍ଭବ ନୁହେଁ । ଚିଠିଗୁଡ଼ିକ ମଧ୍ୟରେ ଚରିତ୍ରଗତ ପାର୍ଥକ୍ୟ ସଂଗେ ସଂଗେ ବିଷୟଜନିତ ଆନୁପାତିକ ବହୁଳତା ମଧ୍ୟ ଲକ୍ଷ୍ୟ କରାଯାଇପାରେ ।

ଗୋଟିଏ ଦୃଷ୍ଟିରୁ ସଂକଳନଟି ଅସାଧାରଣ । ସାଧାରଣତଃ ବିଶିଷ୍ଟ ବ୍ୟକ୍ତି ଯଥା ରାଜନୀତିଜ୍ଞ (ଗାନ୍ଧୀ ବା ନେହେରୁ), ଲେଖକ (ରାଧାନାଥ ରାୟ ବା ଟେଗୋର) ଇତ୍ୟାଦି ଅନ୍ୟମାନଙ୍କୁ ଲେଖିଥିବା ଚିଠିଗୁଡ଼ିକୁ ସଂଗ୍ରହ କରି ସଂକଳନ କରି ପ୍ରକାଶ କରାଯାଇଥାଏ । ଚିଠିଗୁଡ଼ିକର କ୍ରମାନ୍ୱୟତା ଦ୍ୱାରା ଉକ୍ତ ବିଶିଷ୍ଟ ବ୍ୟକ୍ତିଙ୍କର ବ୍ୟକ୍ତିତ୍ୱର କ୍ରମବିକାଶ କିମ୍ବା ଚେତନାର ଉଦ୍ଭବ ବା କ୍ରମଶଃ ପରିପ୍ରକାଶର ଏକ ଆଲେଖ୍ୟ ଉକୁଟି ଉଠେ । ଏହାବ୍ୟତୀତ, ସେଇ ବ୍ୟକ୍ତିଙ୍କର ମତାମତ ବା ରାଜନୀତିକ ତଥା ନନ୍ଦନ ତତ୍ତ୍ୱ ବିଷୟରେ ମଧ୍ୟ ଜନସାଧାରଣ ତଥା ବିଶେଷଜ୍ଞ କିଛି ପ୍ରତ୍ୟକ୍ଷ ଧାରଣା ପାଆନ୍ତି । ପତ୍ରାବଳୀର ସଂକଳନକୁ ସେହି ବ୍ୟକ୍ତିଙ୍କର ଜୀବନୀ ଓ ଆତ୍ମଜୀବନୀର ଏକ ସମାନ୍ତରାଳ ପରିପ୍ରକାଶ କୁହାଯାଇପାରେ । ପରୋକ୍ଷରେ ପତ୍ର ଯେଉଁ ବ୍ୟକ୍ତିଙ୍କ ପାଇଁ ଉଦ୍ଦିଷ୍ଟ ତାଙ୍କ ବିଷୟରେ କମ ହେଲେ ମଧ୍ୟ କିଛି ନା କିଛି ଆଲୋକପାତ କରିଥାଏ । ଭାରତୀୟ ଭାଷାରେ ଏପରି ସଂକଳନର ଚଳଣି ପାଶ୍ଚାତ୍ୟ ଦେଶ ତୁଳନାରେ କମ । ଅନେକ ସମୟରେ ଚିଠିଗୁଡ଼ିକ ଗ୍ରନ୍ଥାବଳୀ ବା ଜୀବନୀ ସହିତ ସଂକଳିତ ହୋଇଥାଏ ଯେପରିକି ମାଇକେଲ ମଧୁସୂଦନ ଦତ୍ତ ଓ ରାଧାନାଥ ରାୟଙ୍କ କ୍ଷେତ୍ରରେ ହୋଇଛି । ଓଡ଼ିଆରେ ରାଧାନାଥ ଓ ଗଙ୍ଗାଧରଙ୍କ ମଧ୍ୟରେ ପତ୍ରାଳାପର ସଂକଳନ ଏହାର ଏକ ବ୍ୟତିକ୍ରମ । ଏପରି ପତ୍ର ସଂକଳନର ପ୍ରକାରାନ୍ତ (ଯାହାକି ବର୍ତ୍ତମାନର ସଂକଳନର ଢାଞ୍ଚା) ହେଉଛି ଜଣେ ବିଶିଷ୍ଟ ବ୍ୟକ୍ତିଙ୍କ ନିକଟକୁ ଅନ୍ୟାନ୍ୟ ବ୍ୟକ୍ତିମାନଙ୍କର ପତ୍ର ଯାହାର ପାଶ୍ଚାତ୍ୟ ସଂସ୍କୃତିରେ ମଧ୍ୟ ବିଶେଷ ଚଳଣି ନାହିଁ, ଏବଂ ଓଡ଼ିଆ ଭାଷାରେ ପ୍ରାୟ ନାହିଁ କହିଲେ ଚଳେ । ବ୍ୟତିକ୍ରମ ଭିତରେ ସାହିତ୍ୟିକ କୃଷ୍ଣଚରଣ ବେହେରା ତାଙ୍କ ଆତ୍ମଜୀବନୀରେ ତାଙ୍କ ନିକଟକୁ ପ୍ରେରିତ ଅନେକ ଚିଠିକୁ ସ୍ଥାନ ଦେଇଛନ୍ତି । କିନ୍ତୁ ଏସବୁ ଚିଠି ମଧ୍ୟ ସାହିତ୍ୟ-କୈନ୍ଦ୍ରିକ ଏବଂ ସେଥିରେ ବିଷୟବସ୍ତୁର ବିବିଧତା ନାହିଁ କହିଲେ ଚଳେ । ଏ ଧରଣର ଅନ୍ୟ ଏକ ସଂକଳନ ହୁଏତ ଅଧ୍ୟାପକ ବିଶ୍ୱରଞ୍ଜନଙ୍କର; କିନ୍ତୁ ଏ ମଧ୍ୟରୁ ଅଧିକାଂଶ ଚିଠି ବରାଦୀ ବୋଲି ମନେହୁଏ । ଜେପିଙ୍କ ପ୍ରାପ୍ତ ସମସ୍ତ ଚିଠିମଧ୍ୟରୁ ଏକମାତ୍ର ଅକୃତ୍ରିମ ବ୍ୟତିକ୍ରମ ହେଲା କେଥରିନ କ୍ଲେମାଁ ଯିଏକି ନିଜେ ଚାହିଁଲେ ତାଙ୍କ ପୁରୁଣା ଚିଠ ବଦଳରେ ଏକ ନୂଆ ଚିଠି ଦେବା ପାଇଁ ।

ଚିଠିଲେଖାର ମୂଳମନ୍ତ୍ର ବା 'ଅ' 'ଆ' କହିବାକୁ ଗଲେ ତିନୋଟି କଥା କୁହାଯାଇପାରେ – ଆବେଗ, ଅନୁରୋଧ ଓ ଆଳାପ – ଯାହାକି ଲେଖକ ବା ଲେଖିକାଙ୍କୁ ଚିଠିଟିଏ ଲେଖିବାକୁ ପ୍ରବର୍ତ୍ତାଇଥାଏ । ଏହାର ବିସ୍ତାର କରିବା ଅନାବଶ୍ୟକ । ସେହିପରି ବିଷୟବସ୍ତୁର 'କ' 'ଖ' କହିଲେ ଚିଠି ପ୍ରାୟତଃ ଖବର, କାର୍ଯ୍ୟ ଏବଂ କାର୍ଯ୍ୟ ସାଧନ ପରେ କୃତଜ୍ଞତା ଜ୍ଞାପନ ସମ୍ବନ୍ଧୀୟ ହୋଇଥାଏ । ଏକଥା ମଧ୍ୟ ଅନୁଭୂତି ଉପରେ ପର୍ଯ୍ୟବେସିତ । ଜେପି ପାଇଥିବା ସମସ୍ତ ଚିଠି ମଧ୍ୟ

ଏହିସବୁ ବିଭାଗୀକରଣର ବୋଲି ମାନିଛନ୍ତି । ଯଦିଓ ଜେପିଙ୍କ ବ୍ୟକ୍ତିତ୍ୱ ଅନୁଯାୟୀ ସେ ଅନେକ ଅତିବେଶି ଆବେଗାତ୍ମକ ଚିଠିକୁ ମୋର ହସ୍ତଗତ କରାଇନାହାନ୍ତି, କେତେକ ଚିଠି ଏବେ ମଧ୍ୟ ମର୍ମସ୍ପର୍ଶୀ ହୋଇ ରହିଛି । ଚରିତ୍ରଟି ବିଷୟରେ ଆମେ କିଛି ଜାଣି ନ ଥିଲେ ମଧ୍ୟ ଏବଂ ସମୟର ଯଥେଷ୍ଟ ବ୍ୟବଧାନ ଥିଲେ ମଧ୍ୟ ଚିଠିର ବିଷୟବସ୍ତୁ ସେ ସମୟର ପରିସ୍ଥିତିକୁ ପୁନର୍ଜୀବନ ଦେଇ ପାଠକ ସମ୍ମୁଖରେ ଠିଆ ହୋଇଛି । ଅନେକ ପତ୍ର ପ୍ରେରକଙ୍କ ଅନୁରୋଧ ଅତି ଅଦ୍ଭୁତ ଏବଂ ଆଉକିଛି ଅନୁରୋଧ ସେଇ ଅନୁପାତରେ ଜେପିଙ୍କ ପରୋପକାରୀ ମନୋଭାବ ସୂଚିତ କରାଇଥାଏ । ସର୍ବୋପରି ଜେପିଙ୍କ ବ୍ୟକ୍ତିତ୍ୱର ସବୁଠାରୁ ନିଆରାପଣ ହେଲା କେମିତି ବିଭିନ୍ନ କିସମର ଲୋକଙ୍କ ସହିତ ସମ୍ପର୍କ ରଖିବା, ତାଙ୍କୁ ହାତ ପହୁଞ୍ଚାରେ ରଖିବାର ଆଗ୍ରହ, ନିଜର ସ୍ୱାର୍ଥ, ଅଭ୍ୟାସ, ରୁଚିଠାରୁ ସମ୍ପୂର୍ଣ୍ଣ ଅଲଗା ଲୋକଙ୍କୁ ଆପଣା ଆଦର କରିବା ଯାହାକି ଇ ଏମ୍ ଫଷ୍ଟରଙ୍କ ଭାଷାରେ "ଓନ୍‌ଲି କନେକ୍ଟ" ବା "କେବଳ ସଂଯୋଗକର" ବୋଲି କୁହାଯାଇପାରେ ।

ସଂପାଦକ ଓ ଚୟନକର୍ତ୍ତା ହିସାବରେ ଯେଉଁସବୁ ଚିଠି ମୋର ହସ୍ତଗତ ହୋଇଛି ତାହା କିଛିଟା ଜେପିଙ୍କ ଦ୍ୱାରା ପ୍ରଥମ ପର୍ଯ୍ୟାୟର ଚୟନ ପ୍ରକ୍ରିୟା ମଧ୍ୟ ଦେଇ ଯାଇଛି । ମୋର ଅନୁରୋଧ ସତ୍ତ୍ୱେ ସେ ନିଜର ପରିବାରବର୍ଗଙ୍କ ଚିଠି ମୋତେ ଦେବା ପାଇଁ କୁଣ୍ଠାବୋଧ କଲେ ଏବଂ ଶେଷ ପର୍ଯ୍ୟନ୍ତ ଅତି କମରେ ତାଙ୍କର ସ୍ୱନାମଧନ୍ୟ ପିତା ଶ୍ରୀଧର ଦାସଙ୍କର ମଧ୍ୟ ଗୋଟିଏ ହେଲେ ଚିଠି ମୋତେ ଯୋଗାଇଲେ ନାହିଁ । ଏସବୁ ପରିବାର ସଦସ୍ୟଙ୍କ ଚିଠି ନିଶ୍ଚେ ଅଧିକ ଆବେଗପୂର୍ଣ୍ଣ ହୋଇଥିବ କିନ୍ତୁ ସେଥିରେ ନିଶ୍ଚିତ ଭାବେ ତାଙ୍କର ପାରିବାରିକ ନିଜ କଥା ଉଲ୍ଲେଖ ଥିବ । ଜେପି ଏକ ସାହିତ୍ୟିକ ହିସାବରେ ନିଜର ବ୍ୟକ୍ତିଗତ ଜୀବନଠାରୁ ଲେଖା ଭିନ୍ନ ବୋଲି ବିଶ୍ୱାସ କରନ୍ତି ଏବଂ କହନ୍ତି ଯେ ଲେଖା ବୁଝିବା ପାଇଁ ଲେଖକର ଜୀବନୀ ଖୋଳାତଡ଼ା କରିବା ଆବଶ୍ୟକ ନୁହେଁ । ତେଣୁ ଏଠାରେ ସ୍ଥାନିତ ଚିଠିଗୁଡ଼ିକର ନିଜସ୍ୱ ଜୀବନ ଓ ମୂଲ୍ୟ ଅଛି – ଜେପିଙ୍କ ନିଜ ଜୀବନୀ ଏବଂ ସାହିତ୍ୟକୃତିକୁ ବୁଝିବା ଏଇ ସଂକଳନର ଉଦ୍ଦେଶ୍ୟ ନୁହେଁ । ସଂପାଦକ ଏବଂ ସାହିତ୍ୟ ସମାଲୋଚକ ହିସାବରେ ମୋର ମତାମତ ଭିନ୍ନ ଏବଂ ମୋର ସମ୍ପୂର୍ଣ୍ଣ ଅଧିକାର ଏବଂ ନିୟନ୍ତ୍ରଣ ଥିଲେ ସଂକଳଟିର କଳେବର ସାମାନ୍ୟ ଅଲଗା ହୋଇଥା'ନ୍ତା । ଅନ୍ତତଃ ଏଥିରେ ଯେତେକ ଚିଠିର କିଛି ଅଂଶକୁ "ସେନ୍‌ସର" କରି ପ୍ରକାଶ କରାହେଉଛି, ମୁଁ ତାହା କରି ନ ଥାନ୍ତି । ତଥାପି ଜେପିଙ୍କ ସପକ୍ଷରେ ମୁଁ କହିବି ଯେ ଶେଷରେ ଆମେଦୁହେଁ ଅନେକ ଯୁକ୍ତି ଓ ଦ୍ୱନ୍ଦ ପରେ କିଛି "ଦିଆ ନିଆ" ସହିତ ନିଷ୍ପତ୍ତି ନେଇଛୁ କେଉଁ କେଉଁ ଚିଠିସବୁ କିପରି ଭାବରେ ଏଇ ସଂକଳନରେ ଉପସ୍ଥାପନ କରାହେବ । ବୁଝାମଣାର ବଟମ୍ ଲାଇନ୍ ବା ସର୍ବନିମ୍ନ ଆଧାର ହେଲା ଯେଉଁ ଚିଠି

ସାଧାରଣ ପାଠକକୁ ଆମୋଦ ପ୍ରଦାୟକ ହେବ ଏବଂ ଅନ୍ତତଃ କୌଣସି ସ୍ଥାନ, କାଳ, ପାତ୍ର ବିଷୟରେ କିଛି କୌତୂହଳ ଉଦ୍ଦୀପକ ହେବ ସେଇ ଚିଠିଗୁଡ଼ିକୁ ହିଁ ନିଆଯିବ । ଅବଶ୍ୟ ଏସବୁ ଚିଠିର ବିଷୟବସ୍ତୁ ଓ ଲେଖକ ଲେଖିକାଙ୍କ ବିଭିନ୍ନତା ଆଉ ଏକ ବିଶେଷ ଆଧାର ବୋଲି ପୂର୍ବେ କୁହାଯାଇଛି ।

ଅନେକ ସ୍ପର୍ଶକାତର ପତ୍ର ଲେଖକ ଓ ଲେଖିକା ଏ ଯାବତ୍ ଜୀବିତ ଥିବାରୁ ତାଙ୍କ ଚିଠି ସର୍ବସାଧାରଣଙ୍କ ଦୃଷ୍ଟିଗୋଚର ହେଲେ ତାଙ୍କର ଭାବନାରେ ହୁଏତ ଆଞ୍ଚ ଆସିପାରେ । କାରଣ ଚିଠି ଲେଖିବା ସମୟରେ କୌଣସି ବ୍ୟକ୍ତି ଏକଥା ସ୍ୱପ୍ନରେ ସୁଦ୍ଧା ଭାବି ନ ଥାଏ ଯେ ଉଦ୍ଦିଷ୍ଟ ବ୍ୟକ୍ତିଙ୍କ ବ୍ୟତୀତ ଏହାର ପାଠକ ଆଉ କେହି ହୋଇପାରେ । ଏଇଥିପାଇଁ କୌତୂହଳ ଓ ସାବଧାନତା ମଧ୍ୟରେ ଭାରସାମ୍ୟ ରକ୍ଷା କରି ଚିଠିଗୁଡ଼ିକୁ ଚୟନ କରିବାର ଯଥାସାଧ୍ୟ ଚେଷ୍ଟା କରାଯାଇଛି । ସେଥିମଧ୍ୟରୁ ଚୟନ କରାଯାଇଥିବା ଏମିତି କିଛି ଚିଠି ଅଛି ଯେଉଁଥିରେ ଲେଖକ କିମ୍ବା ଲେଖିକାଙ୍କର ଭାବବିହ୍ୱଳତା ଚିଠିର ପାଠକୀୟ ସନ୍ତୋଷଜନିତ ମୂଲ୍ୟବୃଦ୍ଧି ତ କରିଛି, କିନ୍ତୁ ସେଇ ଲେଖକ ଜେପିଙ୍କୁ ଜଣେ ଅନ୍ତରଙ୍ଗ ବନ୍ଧୁ ହିସାବରେ ନିଜର ମନ ଓ ହୃଦୟ କଥା ନିର୍ଭୟରେ ବ୍ୟକ୍ତ କରିଛନ୍ତି ଯେଉଁ କଥା ହୁଏତ ସେଇ ମୁହୂର୍ତ୍ତ ଅତିବାହିତ ହୋଇଯିବା ପରେ ତାଙ୍କୁ କିଛିଟା ଅପ୍ରକୃତିସ୍ଥ କରିଥାଇପାରେ । ହୁଏତ ସେଇ ଉତ୍ତେଜିତ ମୁହୂର୍ତ୍ତରେ କୌଣସି ଜଣାଶୁଣା ବ୍ୟକ୍ତିଙ୍କ ଉପରେ କଟୁ ମନ୍ତବ୍ୟ ଦେଇଥାଇପାରନ୍ତି ଯାହା ଜନସାଧାରଣଙ୍କ ଗହଣରେ ପ୍ରକାଶ କରିବା ଅନୁଚିତ ହେବ । ସେପରି ଆପତ୍ତିଜନକ ବାକ୍ୟକୁ ବାଦ ଦେଇ ଅବଶିଷ୍ଟ ଅଂଶ ପ୍ରକାଶିତ ହୋଇଛି । ସେହିପରି କିଛି ଅଖାଡୁଆ ବାକ୍ୟଗଠନ, ବନାନ ଅଶୁଦ୍ଧି ଏବଂ ଅନ୍ୟାନ୍ୟ "ଟାଇପୋ" ଏସବୁକୁ ନ ସଜାଡ଼ି ଅବିକଳ ନକଲ କରାଯାଇଛି । ସାଧାରଣତଃ ଗତାନୁଗତିକ ମୁଦ୍ରଣ ଭଦ୍ରାମୀର ଚାହିଦା ହେଉଛି ବନ୍ଧନୀ ମଧ୍ୟରେ ଭୁଲକୁ ସୂଚାଇଦେବା ଏବଂ ଉହ୍ୟ ବାକ୍ୟ, ଶବ୍ଦ ଇତ୍ୟାଦିକୁ ଯଥୋଚିତ ଚିହ୍ନ ମାଧ୍ୟମରେ ପାଠକକୁ ସତର୍କ କରିଦେବା । ଏପରି କରାଯାଇନଥିବା କାରଣ ପ୍ରଥମ, ଏହି ପ୍ରକାଶନ ଗବେଷଣାମୂଳକ ନୁହେଁ; ଦ୍ୱିତୀୟ, ମନନଶୀଳ ପାଠକକୁ ଅଯଥା ଲକ୍ଷ୍ୟଚ୍ୟୁତ ବା ଅନ୍ୟମନସ୍କ ନ କରି ଲେଖାଟିକୁ ଉପଭୋଗ କରିବାରେ ସହାୟତା କରିବା ।

ଅବିକଳ ନକଲ କଥା କହିଲାବେଳେ ମୂଳ ପତ୍ରଗୁଡ଼ିକ କେଉଁ କାଗଜରେ ଲେଖା ହୋଇଥିଲା, କାଗଜ ଓ କାଳିର ରଙ୍ଗର, ପତ୍ରଲେଖକଙ୍କର ହସ୍ତାକ୍ଷର ଏସବୁ ଅଜଣା ରହିବ । ଦିନ ଥିଲା ଯେତେବେଳେ ଲେଟର ପେଡ୍ ଅନେକ ଫେନ୍‌ସି କାଗଜ, ରଙ୍ଗ ଓ ପ୍ରଚ୍ଛଦପଟ ଥାଇ ବାହାରୁଥିଲା । ଏଥିରେ ପ୍ରେମିକମାନଙ୍କ ପାଇଁ ନାଲିପାନ, ରସିକ ଯୁବକଙ୍କ ପାଇଁ ସାମାନ୍ୟ

"ଅଶ୍ଳୀଳ" ଢ଼ଙ୍ଗ ଏବଂ ସୌନ୍ଦର୍ଯ୍ୟପ୍ରେମୀଙ୍କ ପାଇଁ କିଛି ମନଲୋଭା ଚିତ୍ର ଥିବା ସମସ୍ତଙ୍କୁ ଜଣା । ଯତୀନ ଦାସଙ୍କ ପତ୍ରର ସବୁଠାରୁ ବଡ଼ ଆକର୍ଷଣ ଥିଲା କାଗଜର ଗୋଟେ ପଟେ ତାଙ୍କ ହାତଅଙ୍କା ବଡ଼ ଚିତ୍ର ଏବଂ ଛୋଟିଆ ଚିଠିଟିଏ । ଆଉକିଛି ଲେଖକଙ୍କର ଥିଲା ସୁନ୍ଦର ଗୋଲ ଗୋଲ ଅକ୍ଷର "କେଲିଗ୍ରାଫି" । କାହାରି ଅବା ପୋଷ୍ଟକାର୍ଡ ବା ଅନ୍ତର୍ଦେଶୀୟ ପତ୍ରରେ ଖୁନ୍ଦିଖୁନ୍ଦି ସୋରିଷ ପ୍ରମାଣ ଅକ୍ଷରରେ ଡାକ ମାସୁଲର ପ୍ରତିଟି ପଇସାର ଉପଯୋଗ କରିବା । ସତ୍ୟଜିତ ରାୟ ତାଙ୍କ ଲେଟର ପେଡ୍‌ରେ ଓଲଟା ଆଡୁ (ତଳ, ଉପର) ଚିଠି ଆରମ୍ଭ କରିବା ଇତ୍ୟାଦି ଏଇ ଚିଠିଗୁଡ଼ିକର ପାଠକ କେବେ ଜାଣିପାରିବେ ନାହିଁ । ଆଉ କିଛି ଲେଖକ ଅସମ୍ଭବ ବାର୍ଦ୍ଧକ୍ୟ ବା ରୋଗଶଯ୍ୟାରେ ଥିବା ହେତୁ କିମ୍ବା ଅଭ୍ୟାସଗତ ଭାବରେ ପଢି ନ ହେଲାଭଳି ଅକ୍ଷରରେ ଲେଖିଛନ୍ତି ଏବଂ ଉଭୟ ସଂପାଦକ ଏବଂ ଟାଇପ୍‌ସେଟର୍ ଜେପିଙ୍କ ସାହାଯ୍ୟରେ ବହୁକଷ୍ଟରେ ସେଇସବୁ ଚିଠିକୁ ପାଠକ ସାମ୍ନାରେ ରଖିଛନ୍ତି ଯାହାଫଳରେ ପାଠକ ସବୁ ଚିଠିକୁ ଅନାୟାସରେ ପଢିପାରିବ । ଏହି ସଂପର୍କରେ ମୋର ଜଣେ ବନ୍ଧୁଙ୍କ କଥା ମନେ ପଡୁଛି । ବାହାଘର ପ୍ରସ୍ତାବ ସମ୍ପର୍କୀୟ ଏକ ଚିଠି ଜନୈକ କନ୍ୟା-ପିତା ଭାବୀ ବରପାତ୍ରଙ୍କ ପିତାଙ୍କ ପାଖକୁ ଲେଖିଥିଲେ । ସୁଦୀର୍ଘ ପତ୍ରରେ ଅନେକ କଥା ଲେଖାଥିଲା । କିନ୍ତୁ ସବୁଠାରୁ ଦରକାରୀ ବାକ୍ୟଟି – ଯେଉଁଠିକି କନ୍ୟାପିତା ନିଜର ସ୍ୱୀକୃତି ପ୍ରଦାନ କରୁଛନ୍ତି କି ନା – ଏତେ ଅସ୍ପଷ୍ଟ ଥିଲା ଯେ ଭାବୀ ବରପାତ୍ର ଉକ୍ତ ବାକ୍ୟଟିକୁ ଅସଂଖ୍ୟଥର ପଢି ମଧ୍ୟ ସେ ବାକ୍ୟର ଅର୍ଥ ବାହାର କରିପାରି ନ ଥିଲେ । କହିବା ବାହୁଲ୍ୟ ଯେ ପାତ୍ର ପାତ୍ରୀ ପ୍ରେମିକ ଓ ପ୍ରେମିକା ଥିଲେ ଏବଂ ଉଭୟ ନିଜର ପରିବାରବର୍ଗଙ୍କ ସ୍ୱୀକୃତି ଦ୍ୱାରା ହିଁ ବିବାହ କରିବା ପାଇଁ ଚାହୁଁଥିଲେ ।

ପୁନର୍ମୁଦ୍ରିତ ଚିଠିରୁ ମୂଳ ମାନସିକ ଓ ପ୍ରାଣିକ ଉତ୍ସୁକତାର ପୁନରାବୃତ୍ତି ଅସମ୍ଭବ । ଠିକ୍ ସେହିପରି ଏଠାରେ ସ୍ଥାନିତ କିଛି ପତ୍ରରେ ହୁଏତ କେତେଜଣ ପ୍ରସିଦ୍ଧ ଲେଖକ ଯୁବ ଲେଖକ ଜେପିଙ୍କ ପାଖକୁ ଅସ୍ପଷ୍ଟ ଅକ୍ଷରରେ ପତ୍ର ଲେଖିଥିବେ ଯାହା ଲେଖକ ହେବାର ଲକ୍ଷ୍ୟ ରଖିଥିବା, ଉତ୍ସୁକ ଜେପି ଠିକ୍ ଭାବରେ ସେ ଦେଇଥିବା ମନ୍ତବ୍ୟକୁ ଠଉରେଇ ପାରୁ ନ ଥିବେ – ସେକଥା ମଧ୍ୟ ଏହିଠାରେ ପୁନରାବୃତ୍ତି ହୋଇ ନ ପାରିଥିବା ସ୍ୱାଭାବିକ । ସବୁଠାରୁ ବଡ଼ କଥା ହେଲା ଚିଠିରେ ଥିବା ପ୍ରତିଜ୍ଞା ବା ପ୍ରତିଶ୍ରୁତିର ପରର ଫଳ କଣ ହେଲା – ତାହା ଜାଣିବା ବା ନ ଜାଣି ପାରିବା । ମନେ ପଡେ ବହୁ ପୂର୍ବେ କୌଣସି କ୍ରିକେଟ ଲେଖକ ଲେଖିଥିବା କଥାଟିଏ । ତୁମେ କୌଣସି ରେଳଗାଡ଼ିର ଝରକା ପାଖରେ ବସିଛ, ଇଂଲଣ୍ଡର କୌଣସି ଗାଁ ପାଖରେ ପଡ଼ିଆରେ କ୍ରିକେଟ ଖେଳ ଚାଲିଛି । ତମ ଟ୍ରେନ ସେଇପାଖ ଦେଇ ଯାଉଛି ଏବଂ ଜଣେ ଖେଳାଳୀ ବୋଲିଂ

କରିବା ପାଇଁ ଧାବମାନ । ଠିକ୍ ବୋଲିଂ କରିସାରିଛନ୍ତି ଏବଂ ଟ୍ରେନ୍‌ଟି ବଙ୍କେଇ ଚାଲିଗଲା ଏବଂ ତୁମେ ଜାଣିପାରିଲ ନାହିଁ ବଲଟିର ପରିଣାମ: ବ୍ୟାଟ୍‌ସମ୍ୟାନ୍ ଚାରି ବା ଛ ମାରିଲା ବା ଆଉଟ ହେଲା, କ୍ୟାଚ ନା ବୋଲ୍‌ଡ ଆଉଟ୍ ହେଲା, ଏ ପ୍ରକାରର ପ୍ରଶ୍ନ ଦ୍ୱାରା ମନ ଗୁଡେଇ ତୁଡେଇ, ଆଉଟୁ ପାଉଟୁ ହେଉଥିବ ଆଉ ତମେ କେବେହେଲେ ଜାଣିପାରିବନି ସେଇ ବଲ୍‌ର ଶେଷ ପରିଣାମ କଣ ହେଲା । ଏଠାରେ କେତୋଟି ଚିଠି ପାଠକ ମନକୁ ସେହିପରି ଉଦ୍‌ବେଳିତ କରିପାରେ । ଯେପରି ପତ୍ରାନନ୍ଦଙ୍କ ବିଷୟରେ ଚିଠିଟି । ଜେପି କଣ ତାଙ୍କୁ ସାହାଯ୍ୟ କଲେ, କିପରି ସାହାଯ୍ୟ କଲେ ? ଇତ୍ୟାଦି । ଏଇ ନ ଜାଣି ପାରିବା ଓ ଜାଣିବା ପାଇଁ ଆଗ୍ରହ ଓ ଜିଜ୍ଞାସା ଜାଗ୍ରତ ଚିଠିଗୁଡ଼ିକ ମଧ୍ୟ ମନୋରଞ୍ଜନର ଖୋରାକ ଯୋଗାଇଥାଏ । କୌଣସି କଲେଜପଢ଼ା ଛାତ୍ରୀ ଜେପିଙ୍କ ପାଖକୁ ପାଠକୀୟ ଚିଠି ଲେଖିଛନ୍ତି ଯାହାକି ସାମାନ୍ୟ ଆଦିରସାତ୍ମକ ହୋଇଥିବ । ସେ କଣ କେବେ ଜେପିଙ୍କ ସାଙ୍ଗରେ ଦେଖା କରିପାରିଲେ ? ପରେ କଣ ହେଲା ? ଏଇ ସବୁ କୌତୂହଳ ସୃଷ୍ଟି କରୁଥିବା ଚିଠି ଗୋଟିଏ ଶ୍ରେଣୀର ହେଲେ ଅନ୍ୟାନ୍ୟ କିଛି ଚିଠିର ଆକର୍ଷଣ ପ୍ରେରକଙ୍କ ବ୍ୟକ୍ତିତ୍ୱ ଉପରେ ନିର୍ଭର କରେ ଓ ଏଗୁଡ଼ିକ ପାଠକ ମନ ଉପରେ ଥିବା ଆଗ୍ରହ ଉପଶମ କରୁଥିବା ଶ୍ରେଣୀର ହେବ ।

ଆଉ ଏକ ଶ୍ରେଣୀର ଚିଠି ଯାହାକି ଓଡ଼ିଆ ପୁସ୍ତକ ପ୍ରକାଶନ-ସଂସ୍କୃତିର କିଛି ମହତ୍ତ୍ୱପୂର୍ଣ୍ଣ ଦିଗ ଦର୍ଶାଇଥାଏ । ପୁସ୍ତକର କଭର ଡିଜାଇନ୍ ବିଷୟରେ ସତ୍ୟଜିତ ରାୟଙ୍କଠାରୁ ଆରମ୍ଭ କରି ସୁରେନ୍ଦ୍ର ମହାନ୍ତି ଓ ମେଘନା ଗୁଲଜାର ପର୍ଯ୍ୟନ୍ତ କିଛି ନା କିଛି ମନ୍ତବ୍ୟ ଦେଇଛନ୍ତି । ଜଣେ ଅଧେ ପୁସ୍ତକ ପ୍ରସ୍ତୁତି କ୍ଷେତ୍ରରେ କଡ଼ା-ଶାସନର ଆବଶ୍ୟକତା କଥା ମଧ୍ୟ କହିଛନ୍ତି । ଜଣେ ବିଦ୍ୱାନ ଲେଖିକା କହିଛନ୍ତି ଯେ ଅଷ୍ଟାଦଶ ଶତାବ୍ଦୀର ଇଉରୋପୀୟ "କଫିହାଉସ" ପରି ଅବାଧ ଚିଠି ଲେଖାର ପରିସରକୁ ହେବରମାସଙ୍କ "ପବ୍ଲିକ ସ୍ପିୟର" ସଂଜ୍ଞାଜନିତ ପରିଧି ମଧ୍ୟରେ ଗଣାଯାଇପାରେ । କାରଣ ଅନେକ ଆଲୋଚନା ଓ ଯୁକ୍ତିତର୍କ ଏଇ ଡାକ ବ୍ୟବସ୍ଥା ମାଧ୍ୟମରେ ହିଁ ରାଜନୈତିକ ଓ ସାଂସ୍କୃତିକ ବ୍ୟବସ୍ଥାକୁ ସୁଦୃଢ଼ କରାଇଥିଲା । ଏକଥା ଊନବିଂଶ ଶତାବ୍ଦୀରୁ ଆରମ୍ଭ ହୋଇ ଭାରତରେ ବିଶେଷ କରି ଓଡ଼ିଶା ପରିପ୍ରେକ୍ଷୀରେ ମଧ୍ୟ ବିଚାର କରାଯିବା ଉଚିତ । ଏହାର ଉଦାହରଣ ଜେପିଙ୍କ ପତ୍ରାବଳୀରୁ କେତେକାଂଶରେ ଅନୁମାନ କରିହେବ ।

ଜେପି ତାଙ୍କର ଅଜସ୍ର ଚିଠିପତ୍ର ସାଇତି ରଖିବା ହୁଏତ କେତେକଙ୍କୁ ଆଶ୍ଚର୍ଯ୍ୟ ଲାଗିପାରେ । କିନ୍ତୁ ଏଇ ସଂପାଦକଙ୍କ ପାଇଁ ଏଥିରେ ଆଶ୍ଚର୍ଯ୍ୟ ନ ହେବା ଏଇଥିପାଇଁ ସ୍ୱାଭାବିକ ଯେ ସେ ଏପରି ଏକ ପରିବାରର ସଦସ୍ୟ ଯେଉଁମାନେ ସମସ୍ତେ ନିଜେ ଚିଠି ଲେଖା ଅଭ୍ୟାସର ବଶବର୍ତ୍ତୀ ଥିଲେ

ଏବଂ ପରେ ପାଉଥିବା ଚିଠିଗୁଡ଼ିକୁ ଫୋପାଡ଼ି ନ ଦେଇ ପାଖରେ ରଖୁଥିଲେ । ଫଳସ୍ୱରୂପ ଘର ବଦଳି ସମୟରେ କିଛି କାଠ ଆସବାବ ଓ ବହିପତ୍ର ସହିତ ବସ୍ତା ବସ୍ତା ପୁରୁଣା ଚିଠି ସ୍ୱବୁକୁ ଯତ୍ନ ସହିତ ସ୍ଥାନାନ୍ତର କରିବା ଥିଲା ଆମମାନଙ୍କ ପ୍ରଧାନ ଦାୟିତ୍ୱ । କେବେକେବେ ଚିଠିଗୁଡ଼ିକରେ ହାତ ବାଜିଲେ ପରିବାରବର୍ଗ ଗହଣରେ ବସି ବିଗତ ଦିନର ସ୍ମୃତି, ସୁଖ ଦୁଃଖ ବାଣ୍ଟିବା ରବିବାରୀୟ କାର୍ଯ୍ୟକ୍ରମ ସଦୃଶ ବିତାଇବା ସାଧାରଣ କଥା । ସେଇ ମନୋରଞ୍ଜନ କୌଣସି ଭଲ ଗପ ବହି ପଢିବା ବା ସିନେମା ଦେଖିବାଠାରୁ କମ ନ ଥିଲା । ସଂପାଦକଙ୍କ ପିତା ବସନ୍ତ ଶତପଥୀ ନିଜେ ବିଶିଷ୍ଟ ବ୍ୟକ୍ତିମାନଙ୍କ ସମ୍ପର୍କରେ ଆସିଥିଲେ ଓ ତାଙ୍କ ପାଖରୁ ଅନେକ ଚିଠି ସହିତ ଅନେକ ପାଠକୀୟ ଚିଠି ମଧ୍ୟ ସାଇତି ରଖିଥିଲେ । ଏହା ମଧ୍ୟ ଅନ୍ୟ ଏକ କାରଣ ଯେଉଁଥିପାଇଁ କି ମୁଁ ଜେପିଙ୍କର ସାଇତା ହୋଇଥିବା ଚିଠି କଥା ଜାଣିଲା ପରେ ତାଙ୍କୁ ବାରମ୍ୱାର ପ୍ରବର୍ତ୍ତାଇବା ପାଇଁ ଚେଷ୍ଟା କରିଥିଲି ଚିଠିର ଏକ ସଂକଳନ କରିବା ପାଇଁ ।

ଆଉଟିକେ ବିସ୍ତାରିତ କରି କଥାଟା ଲେଖିଲେ ଏଇ ସଂକଳନ ପ୍ରତି ଆଗ୍ରହ ଓ ଉତ୍ସାହର ଉସ ଦୁଇ ପ୍ରକାର । ପ୍ରଥମଟି ହେଲା ଚାରିତ୍ରିକ, ଅର୍ଥାତ୍ ମୋର ବ୍ୟକ୍ତିଗତ ଅନୁଭୂତି ଓ ମନୋଭାବ ବର୍ତ୍ତମାନ ଓ ଭବିଷ୍ୟତ କିପରି ଅତୀତ ଉପରେ ନିର୍ଭରଶୀଳ ହୋଇଛନ୍ତି ତାହାକୁ ପୁରୁଣା ଚିଠିପତ୍ର ଦ୍ୱାରା ନିଜକୁ ମନେପକାଇବା କଥା, ଯାହାକି କିଛିଟା ଆବେଗ ଦ୍ୱାରା କଳୁଷିତ ବୋଲି କେହି କହିପାରନ୍ତି । ଦ୍ୱିତୀୟ ଉସଟି ହେଲା ମୋର ନିଜର ପେଷାଜନିତ ବିକଳ୍ପ । ଏକ ଗବେଷକ ହିସାବରେ ମୁଁ ଲେଖକଙ୍କର ପାରିପାର୍ଶ୍ୱିକତା ଉପରେ ଜୋର ଦିଏ । ଲେଖକଙ୍କର ନିଜ ପରିସ୍ଥିତି, ନିଜର ଜୀବନ, ନିଜର ଅନୁଭୂତି ବାହାରେ କୌଣସି ସାହିତ୍ୟ କୃତି ହୋଇ ନ ପାରେ । ଇମାଜିନେସନ ବା ଭାବନାର ଅସୀମତା ମଧ୍ୟ ଅନୁଭୂତି ଦ୍ୱାରା ସୀମିତ ହୋଇଥାଏ । କୌଣସି ରୂପକଳ୍ପର ଉସ ଖୋଜିବା ପ୍ରଥମ ଉଦ୍ଦେଶ୍ୟ ନ ହୋଇପାରେ । କିନ୍ତୁ ଲେଖକ ବା ଚିତ୍ରକରର ଜୀବନର ଅନୁଭୂତି ଜାଣିଲେ ତାହା ତାଙ୍କର କୃତିକୁ ବୁଝିବାରେ କିଛିଟା ସହାୟକ ହେବ ବୋଲି ମୁଁ ଭାବେ । ଏଇ ମତରେ ସପକ୍ଷ ଓ ବିପକ୍ଷରେ ଅନେକ ମତ ପୋଷଣ କରନ୍ତି । ଜେପି ନିଜେ ଏଇ ମତରେ ବିପକ୍ଷ । ସେଇଥିପାଇଁ ତାଙ୍କ ନିଜ ଉଦାହରଣରୁ ତାଙ୍କୁ ଭୁଲ ପ୍ରମାଣିତ କରିବା ଏଇ ସଂକଳନକୁ ସଜାଇବା ପାଇଁ ମତେ ଅଶେଷ ପ୍ରେରଣା ଯୋଗାଇଛି ।

# ବ୍ଲାଁଚ ଏବେଲ

ଆଲାହାବାଦ, ୯ ଜୁନ ୫୮

[ ରେଭେନଶା କଲେଜରୁ ବି.ଏ. ପଢ଼ି ସାରିବା ପରେ ମୁଁ ଆଲାହାବାଦ ବିଶ୍ୱବିଦ୍ୟାଳୟରେ ୧୯୫୫-୫୭ରେ ରାଜନୀତି ବିଜ୍ଞାନରେ ଏମ.ଏ. ପଢ଼ିଲି । ପରେ ସେଠାରେ ଗୋଟିଏ ବର୍ଷ ଅଧ୍ୟାପନା କରିବା ପରେ ଆଇ.ଏ.ଏସ. ପାଇ ମେ' ୧୯୫୮ରେ ଦିଲ୍ଲୀର ଟ୍ରେନିଂ ସ୍କୁଲକୁ ଚାଲିଗଲି ।

ଆଙ୍ଗ୍ଲୋ ଇଣ୍ଡିଆନ ଝିଅ ବ୍ଲାଁଚ ଆମ ତଳ କ୍ଲାସରେ ଇଂରାଜୀ ସାହିତ୍ୟ ପଢୁଥିଲେ, ଗମ୍ଭୀର ପ୍ରକୃତିର ତଥା ଉତ୍ତମ ଛାତ୍ରୀ ଥିଲେ । ମୁଁ ଟ୍ରେନିଂ ସ୍କୁଲରେ ଥିବା ବେଳେ ସେ ଏଇ ଚିଠିଟି ଲେଖିଥିଲେ । ପରବର୍ତ୍ତୀ ସମୟରେ ତାଙ୍କ ସହିତ ମୋର ଆଉ ଯୋଗାଯୋଗ ନ ଥିଲା । ପାଠପଢା ପରେ ସେ ଅଧ୍ୟାପନା କରୁଥିଲେ ବୋଲି ଶୁଣିଥିଲି । ]

Allahabad
9.6.58

Dear Mr. Das,

You may be grieved to know that my position on the Merit List was only 4th, & perhaps relieved to hear that I am totally unaffected, except that my zeal to make up this year is enormous.

How are you faring at the Training School? It would be interesting to learn how you spend your time, & how successful you have been in adjusting yourself to your new circumstances. Most of my own time is being spent in study and reading. I am also trying to improve my mind, & if you have any hints, I'd be glad to have them.

All'd., & Civil Lines in particular will soon be filling up with the students. It's not very certain whether you've already started having reminiscences of your student days.

I hope you've been able to repair the damages to your health.

With best wishes.

Yours sincerely,
B. Abel

## ସେକ୍ରେଟାରୀ, ଯୋଗାଣ ବିଭାଗ

ଭୁବନେଶ୍ୱର, ୨୩ ଅଗଷ୍ଟ ୬୫

[ ଆଇ.ଏ.ଏସ. ଟ୍ରେନିଂ ସ୍କୁଲ ପରେ ମୁଁ ୧୯୫୯ରେ ଓଡ଼ିଶାକୁ ଫେରି ବିଭିନ୍ନ ପଦରେ କାମ କରିଥିଲି ଓ ୧୯୬୩ରୁ ୬୬ କଳାହାଣ୍ଡି ଜିଲ୍ଲାର କଲେକ୍ଟର ଥିଲି । ୧୯୬୫ରେ ଚାଉଳ ଅଭାବ ଯୋଗୁ ସେଠାରେ ପ୍ରାୟ ଦୁର୍ଭିକ୍ଷ ପରିସ୍ଥିତି ଦେଖା ଦେଇଥିଲା । ସେଥିପାଇଁ ମୁଁ ନିର୍ଦ୍ଦେଶ ଦେଇଥିଲି ଯେ ଜିଲ୍ଲାରୁ ଚାଉଳ ବାହାରକୁ ନ ଯାଉ । ଓଡ଼ିଶା ସରକାରଙ୍କ ଯୋଗାଣ ବିଭାଗ ଏ ନିର୍ଦ୍ଦେଶକୁ ପ୍ରତ୍ୟାହାର କରିବା ପାଇଁ ମତେ ଏଇ ଚିଠିଟି ଦେଇଥିଲେ । ଅବଶ୍ୟ ପରବର୍ତ୍ତୀ ସମୟରେ କଳାହାଣ୍ଡିକୁ ବାହାରୁ ଚାଉଳ ଆମଦାନୀ କରିବାକୁ ପଡ଼ିଥିଲା ।

ଏହାର ଶହେ ବର୍ଷ ପୂର୍ବରୁ ୧୮୬୫ ନ ଅଙ୍କ ସମୟରେ ତଦାନୀନ୍ତନ କମିଶନର ରେଭେନଶା ବାଲେଶ୍ୱର କଲେକ୍ଟରଙ୍କ ପାଖକୁ ଏ ଭଳି ଏକ ପତ୍ର ଲେଖିଥିବା ବିଷୟରେ ମୁଁ ଅନ୍ୟତ୍ର ଲେଖିଛି । ]

Copy of Supply Deptt. letter No. 18312 dt.23.8.65
to Collector, Kalahandi

Sub: Restriction on movement of stocks outside the district of Kalahandi.

Ref: Your memo No. 4202 dt. 15-8-65

(ii) Your D.O. letter No. 4196/CS dt.15.8.65 addressed to Secy. Supply Deptt.

I am directed to say that on reviewing the food position in the State it has been decided by Government to continue despatches of rice from Kalahandi district to the Central Reserves as before according to the 75% levy on the production of rice from the mills as per the Levy – Procurement Order, 1964. It is further decided that movement of rice to Rourkela and other industrial areas in the State through free trade channels should not be restricted. I am, therefore, to request you that the instructions issued by you to all the Regional Civil Supplies staff of your district and the Railway Authorities in your letter dated 15th August, 1965 should be withdrawn forthwith under intimation to this Deptt.

For building up of reserves within your district, you may purchase as much of rice as available with the millers and other dealers without interfering with the normal movement of stocks to the Centre and to the industrial areas in the State.

ଟିପ୍ପଣୀ: ରେଡେନ୍‌ଶାଙ୍କ ପତ୍ର ବିଷୟ *Words on Canvas*ର ୧୭୬-୧୭୭ ପୃଷ୍ଠାରେ ଦ୍ରଷ୍ଟବ୍ୟ ।

## ପ୍ରହ୍ଲାଦ ବିଶି

ବୌଦ୍ଧ, ୮ ଏପ୍ରିଲ ୬୯ ଓ ପରବର୍ତ୍ତୀ

[ ମୁଁ କଟକର କ୍ରାଏଷ୍ଟ କଲିଜିଏଟ ସ୍କୁଲରେ ପାଠ ପଢ଼ିବା ବେଳେ ଶ୍ରୀଯୁକ୍ତ ବିଶି ସେଠାରେ ଆମର ଗଣିତ ଶିକ୍ଷକ ଥିଲେ । ମୋର ସ୍କୁଲ ଛାଡ଼ିବାର ଅଠର ବର୍ଷ ପରେ ସେ ମୋ ପାଖକୁ ପ୍ରଥମ ଚିଠିଟି ଲେଖିଥିଲେ । ଜଣେ ଶିକ୍ଷକ ତାର ଛାତ୍ର ପାଖକୁ ଏତେ ବର୍ଷ ପରେ ଚିଠି ପଠାଇବା ମୋ ପାଇଁ ସୌଭାଗ୍ୟର ବିଷୟ ଥିଲା । ଆହୁରି ଆନନ୍ଦର ବିଷୟ ଥିଲା ସେ ମୋର ସାହିତ୍ୟିକ ପ୍ରଚେଷ୍ଟାକୁ ମନେ ରଖିଥିବା ଏବଂ ମୋର ଚାକିରିରେ ଉନ୍ନତି ହେଉଥିବା ସହିତ କବି ଭାବରେ ଉନ୍ନତି ହେଉଛି କି ନାହିଁ ସେ ବିଷୟରେ ଜାଣିବାକୁ ଚାହିଁବା । ମୁଁ ସେ ସମୟରେ ଲେଖା ଲେଖି ବନ୍ଦ କରି ଦେଇଥିବାରୁ ଏହା ମୋ ପାଇଁ ଏକ ମୃଦୁ ଭର୍ତ୍ସନା ମଧ୍ୟ ଥିଲା ।

ପରବର୍ତ୍ତୀ ଚିଠିଟି ସେ ଆହୁରି ଅନେକ ବର୍ଷ ପରେ ଲେଖିଥିଲେ 'ଏକ ଜଟିଳ ସାହିତ୍ୟ ସମ୍ବନ୍ଧୀୟ ସମସ୍ୟା ନେଇ' । ସମସ୍ୟା ଥିଲା ଝଂକାର ପତ୍ରିକାରେ ପ୍ରକାଶିତ ଲେଖାଟିରେ ତାଙ୍କୁ କିଛି ଅଶୋଭନୀୟ ମନେ ହୋଇଥିଲା । ବୋଧହୁଏ ମୋର କିଛି ସାହିତ୍ୟ ଚର୍ଚ୍ଚା ଦେଖିବା ପରେ ସେ ମୋ ଆଗରେ ଏ ସମସ୍ୟାଟି ରଖିଥିଲେ ।

ଜୀବନରେ ଏଭଳି ଜଣେ ଶିକ୍ଷକ ପାଇବା ଯେ କୌଣସି ଛାତ୍ରର ଗର୍ବର ବିଷୟ । ]

My dear Sri Das,

I have the pleasure to write this and hope it will find you in best of your health.

Today, I learnt from a young friend that you are actively, sincerely and intelligently up and doing in the battle of life. I was glad, you are in a high position in the society. Still when I was a teacher of Mathematics in the Christ Collegiate, I had

acquaintance with you. Then I knew you as a prospective bright student and a poet.

May I have the pleasure to request you to inform me whether you have time to let me know how you are progressing as a poet. Further, I like to write more.

With best wishes.

Yours sincerely,
P. Bishi

୧୫.୯.୮୨, ବୌଦ୍ଧ

## ଏକ ଜଟିଳ ସାହିତ୍ୟ ସମ୍ବନ୍ଧୀୟ ସମସ୍ୟା

ସ୍ନେହାସ୍ପଦେଷୁ,

ମୋର ଆନ୍ତରିକ ଶୁଭେଚ୍ଛା ପରେ – ସପ୍ତତିବର୍ଷ ପାର ହେବା ପରେ – ଜଣେ ବ୍ୟକ୍ତି "ସୂର୍ଯ୍ୟାସ୍ତ ପର" ଗୋଧୂଳି ଲଗ୍ନରେ । ସେତେବେଳେ ସେ ଦୁନିଆଁକୁ ଆଧୁନିକ ଚକ୍ଷୁରେ ଦେଖିବା ସାମର୍ଥ୍ୟ ହରାଇଥାଏ ।

ଓଡ଼ିଶାରେ ଝଙ୍କାର ଓ ତା ତଳକୁ ପୌରୁଷ ୨ଟି ନାଆଁକରା ସାହିତ୍ୟ ପତ୍ରିକା । ମାସିକ ଝଙ୍କାର ଖଣ୍ଡି ବାହାରିଲେ ତାକୁ ସମସ୍ତେ ଆଗ୍ରହରେ ପଢନ୍ତି – କଲେଜର ଛାତ୍ରଠାରୁ ଅଧ୍ୟାପକ ଯାଏ ଏପରିକି ହାଇସ୍କୁଲର ଶିକ୍ଷକ ଶିକ୍ଷୟିତ୍ରୀ, ଛାତ୍ରଛାତ୍ରୀ ଝଙ୍କାର ପଢିବାକୁ ସମସ୍ତେ ଆଗ୍ରହୀ । ଆଧୁନିକ ଭାଷା ଓ ସଂସ୍କୃତିର ପରିଚାୟକ 'ଝଙ୍କାର' ।

ଏପ୍ରିଲ୍-୧୯୮୨ (ମେଷ ୧୩୮୯) ୩୪ଶ ବର୍ଷ-ବିଷୁବ ସଂଖ୍ୟା – ଝଙ୍କାର - ପଢୁଥିଲେ -କେତେକ ୮ମ ଶ୍ରେଣୀୟ ଛାତ୍ରୀ – ତାଙ୍କର କୌତୂହଳ ଦେଖି ଝଙ୍କାରଟା ମାଗିଲି । ଭାରି ସଙ୍କୋଚରେ ଦେଲେ । ନେଉଁ ନେଉଁ ୧୩୦ ପୃଷ୍ଠା – ଓଲଟି ପଡିଲା ।

ସେଠି ଦେଖୁଁ ଦେଖୁଁ, ୧୩୦ ପୃଷ୍ଠାର ୩ୟ ଧାଡିରୁ ୭ଟି ଧାଡ଼ି ଥିବା ଅନୁଚ୍ଛେଦ ପଢିଲି । ବାବୁ, ଆମର ବୟସ ଗଲାଣି । ଆଧୁନିକ ନୋହୁଁ ? ଖାଲି ଏତିକି ଜାଣିବାକୁ ଚାହେଁ – ଏ କଣ ଆଧୁନିକ ସାହିତ୍ୟ ଓ ସଂସ୍କୃତିର ଆଦର୍ଶ ? ଦେଶର ଭାଷା କଣ ଏ ଆଡକୁ ? କହିଥିଲେ କବି – "ଉଚ୍ଚ କର ଆଗେ ନିଜ ମାତୃଭାଷା" —

ଏପରି ସମସ୍ୟା ଆଣିବା ମୋର ସୌଜନ୍ୟ ପରିଚାୟକ ନୁହେଁ ବୋଲି ମନେକରି ମଧ ଲେଖି ପକାଇଲି ।

ଶୁଭାଶୀର୍ବାଦ ସହ

P. Bishi

15.9.82

ଚିଠି ଉପରେ ଶିରୋନାମା ଓ ତା ତଳେ ଗାର ପ୍ରହ୍ଲାଦ ବିଶିଙ୍କର ନିଜର ଲେଖା । ସେତେବେଳର ଫୁଲବାଣୀ ଜିଲ୍ଲା ସଦର ମହକୁମା ବୌଦ ବା ବଉଦର ବୌଦ୍ଧ ବନାନ ମଧ୍ୟ ତାଙ୍କରି ।

## ଏସ. କୃଷ୍ଣମୂର୍ତ୍ତି

ବମ୍ବେ, ୨୦ ସେପ୍ଟେମ୍ବର ୬୯

[ ୧୯୬୯ରେ ବମ୍ବେରେ ଓଡ଼ିଶା ସରକାରଙ୍କର ଏକ ପର୍ଯ୍ୟଟନ କେନ୍ଦ୍ର ଖୋଲାହେବା ବେଳେ ମୁଁ ଦୈବାତ ସେଠାରେ ଥିଲି । ମୁଁ ସେତେବେଳେ ଶିକ୍ଷା ବିଭାଗରେ କାମ କରୁଥିଲି । ସେ ସମୟରେ Indian Express ଓଡ଼ିଶା ସମ୍ପର୍କିତ ଅନେକ ଅନୁକୂଳ ଲେଖା ପ୍ରକାଶ କରୁଥିଲେ । ]

September 20, 1969

Mr. J.P. Das
Director of Industries
Govt. of Orissa
Cuttack

Dear Mr. Das:

Thanks for your kind letter. I have only done my duty for I like Orissa, especially the determined young men with imagination. It was my pleasure meeting you here, though for only a few fleeting minutes. I wish it were longer.

Well, did you get the copies of papers? Enclosed please find a copy of the photograph taken at the opening of the tourism centre.

You can always depend on the Indian Express for ample publicity to a worthy cause. Hope to see you again soon.

Regards

Yours
S. Krishnamurty
News Editor, The Indian Express

## ଅଜ୍ଞାତ ନାମଧେୟ

ପାହାଡ଼ପୁର, ୬ ଅକ୍ଟୋବର ୬୯

[ ସମସ୍ତଙ୍କ ପାଖକୁ ବୋଧହୁଏ କେବେ କେବେ ଏ ଭଳି ଭୀତିପ୍ରଦ ଚିଠି ଆସିଥାଏ । ବର୍ତ୍ତମାନ ଇଣ୍ଟରନେଟ ଓ ଏସ୍.ଏମ୍.ଏସ୍. ଯୁଗରେ ଏ ଭଳି ସତର୍କ ବାଣୀର ସଂଖ୍ୟା ଆହୁରି ବେଶୀ ।

ଈଶ୍ୱର, ଭୂତ ପ୍ରେତ, ଜ୍ୟୋତିଷ ଓ ଟୁଣୁକା ଇତ୍ୟାଦିରେ ବିଶ୍ୱାସ କରୁ ନ ଥିବାରୁ ଏ ଚିଠିଟିକୁ ଚିରି ଫିଙ୍ଗି ଦେବାର ଥିଲା । କିନ୍ତୁ ଏକ କୌତୂହଳ ଭଳି ଚିଠିଟି ଏ ପର୍ଯ୍ୟନ୍ତ ମୋ ପାଖରେ ରହିଛି । ]

ପାହାଡ଼ପୁର

ତା୬.୧୦.୬୯

ମହାଶୟ,

ବିଶେଷ ଜ୍ଞାତବ୍ୟ କାରଣ ଏହିକି ଆପଣଙ୍କ ଭାଗ୍ୟର ଅବସ୍ଥା ଅତ୍ୟନ୍ତ ଖରାପ ଥିବାରୁ ଜଣାଉ ଅଛି କି ଆପଣ ଅକଟବର ମାସ ମଧ୍ୟରେ ଗସ୍ତକ୍ରମ କରିବା ମନା ଅଛି । କାରଣ ସର୍ପ; କୌଣସି ଆତତାୟୀ କିମ୍ବା ମଟର ଦ୍ୱାରା ଏକ୍‌ସିଡେଣ୍ଟ ହେବାର ସମ୍ଭାବନା ଅଛି । ତେଣୁ ଗସ୍ତକ୍ରମ କଲେ ବିପଦ ସମ୍ମୁଖିନ ହେବେ । ନଭେମ୍ବର ପ୍ରଥମ ସପ୍ତାହ ପରେ ଏ ଗ୍ରହ କଟିବ । ବିଶେଷ ଭାବେ ଜଣାଇଅଛି । ଅମାନ୍ୟ ହେଲେ ବିପଦରେ ପଡ଼ି ପାରିବେ ।

ଇତି

(ଅସ୍ପଷ୍ଟ)

## ଖାଦେର ଆଲି ଖାନ୍

ହାଇଦ୍ରାବାଦ, ୩୦ ଜୁଲାଇ ୭୦

[ ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗରେ କାମ କରୁଥିବା ବେଳେ ମୁଁ ପ୍ରଥମ ଥର ପାଇଁ ୧୯୭୦ ମସିହାରେ ବିଦେଶ ଗଲି । ମୋର ପ୍ରଥମ ଗନ୍ତବ୍ୟ ସ୍ଥଳ ଥିଲା ସେତେବେଳର ପୂର୍ବ ଜର୍ମାନୀର ଲାଇପଜିଗ୍ ଓ ତା ପରେ ଅନେକ ଦେଶ । ଏହି ଯାତ୍ରାରେ ଆନ୍ଧ୍ରପ୍ରଦେଶରୁ ଆସିଥିବା ଶିକ୍ଷା ବିଭାଗର ଅଫିସର ଖାନ୍‌ଙ୍କ ସହିତ ପରିଚୟ ହୋଇଥିଲା । ସେ ଏକା ଭ୍ରମଣ କରିବାକୁ ଭୟ କରୁଥିଲେ ଏବଂ ଲାଇପଜିଗ୍‌ରେ ପ୍ରଥମ ସାକ୍ଷାତ ପରେ ସେ

ତାଙ୍କର ଟିକେଟକୁ ବଦଳାଇ ମୁଁ ଯେଉଁ ଯେଉଁ ଜାଗାକୁ ଯାଉଥିଲି ମୋ ସହିତ ସାମିଲ ହୋଇଗଲେ । ତାଙ୍କର ସାହଚର୍ଯ୍ୟରେ ମୋର ଗୋଟିଏ ମାସର ଯାତ୍ରା ଅତି ପ୍ରୀତିକର ହୋଇଥିଲା । ]

Date: April 30, 1970

Dear Mr. Das,

I really owe an apology to you for being apparently so indifferent in delaying the replies to your kind letters. I should be pardoned for my inability to write to you earlier. As soon as I reached home, I have had hardly four days left to arrange for the foundation-stone laying ceremony for the Technocrats' Industrial Estate by our Chief Minister and after this function, series of meetings and other important engagements came in my way to convey my grateful thanks to your goodself who has been extremely nice to me all through the journey.

Besides seeing some parts of Europe which has indeed been one of my ambitious, I am equally lucky to meet you for the first time at Leipzig. I repeat that it is indeed a unique opportunity for me to have you as my very good friend. I have told to all my friends that I have had proud privilege of meeting a young bright officer and a kind hearted and a good friend. Not only me but whomsoever had seen you at the places that we visited was simply charmed by your fascinating personality. I do not like to mention the occassions when so many people tried to steal a glimpse of yours and you know few of them I am sure. I thank you very much for sending me the photographs so thoughtfully and also the money, half of which has to be sent back to you.

All these days, I have been trying to write letters to our friends in Europe, but somehow I could not find the time to do so. It is only today I thought that I should start writing letters and you are the first among them. I am also writing letter to Mr. Shafi thanking him and his wife for all they did for us. The other day we had conference in Delhi. I had conveyed my regards to you through my counterpart in your State. I have been talking so much about you with our friends here that they have come exceedingly anxious to meet you. Why not take a chance of visiting our place when you find time. We are going to Visakhapatnam on 27th and returning on the 28th. If I had enough time, I would have definitely availed of this opportunity to visit your place, but it will not be very far when I would plan a visit to Cuttack, say in the fourth week of May or early June.

I once again thank you very much for being so kind and for helping me at all stages and at all places like a good guide and a sweet friend. I pray God to give you the best of health, long life and to your wife and to your sweet daughter.

With warmest regards.

Yours sincerely,

(KHADER ALI KHAN)

# ଆବାନ ଖୁଦାଇଜୀ

ବମ୍ବେ, ୧୮ ମାର୍ଚ୍ଚ ୭୧

[ ୧୯୬୬ରେ କଳାହାଣ୍ଡିରୁ ଭୁବନେଶ୍ୱର ଫେରିବା ପରେ ମୁଁ ପେଣ୍ଟିଙ୍ଗ କରିବା ଆରମ୍ଭ କଲି । ପିଲାଦିନୁ ମୋର ଚିତ୍ର କରିବାରେ ଆଗ୍ରହ ଥିଲା ଏବଂ ଆଲ୍ଲାହାବାଦରେ ପଢ଼ିବା ବେଳେ ମୁଁ କିଛି ଦିନ ପେଣ୍ଟିଙ୍ଗ କ୍ଲାସରେ ଯୋଗ ଦେଇଥିଲି; ସେ କ୍ଲାସରେ ମୋ ସହିତ ଥିଲେ ବନ୍ଧୁ ଶରତ ପୂଜାରୀ । ବେଶ କିଛି ତୈଳଚିତ୍ର କରିବା ପରେ ମୁଁ ଗୋଟିଏ ଏକକ ପ୍ରଦର୍ଶନୀ କରିଥିଲି ୬ ମାର୍ଚ୍ଚ ୧୯୭୧ରେ । ଏ ଚିଠିଟି ସେ ସମ୍ପର୍କରେ ।

୧୯୭୩ ବେଳକୁ ମୁଁ ଚିତ୍ର ଆଙ୍କିବା ବନ୍ଦ କରିଦେଲି ଏବଂ ଜୁନ ୭୩ରେ ଦିଲ୍ଲୀ ଯିବା ପରେ ଆଉ ଚିତ୍ର କରି ନ ଥିଲି । ସେତେବେଳକୁ ମୁଁ ପୁଣି କବିତାକୁ ଫେରି ଯାଇଥିଲି । ]

My Dear J.P.,

I have received your letter dated 9th together with a photograph taken on the occassion of your one man show which will be included in our issue of April.

When I received your invitation I got quite a shock of my life because I did not know that you were such a versatile painter.

How is it you have not paid us a visit in Bombay. Please let me know when you are coming as I would like to see you again. Also please tell Mr. Harihar Patel when next time he comes as I would also like to see him.

As soon as the April issue is out, I will send you a copy.

With kind personal regards,

Yours sincerely,

(MISS) ABAN KHUDAIJI
PUBLIC RELATIONS DIRECTOR

The Onlooker
18th March 1971

ସେ ସମୟରେ Onlooker ଥିଲା ବମ୍ବେରୁ ପ୍ରକାଶିତ ଏକ ପ୍ରସିଦ୍ଧ ନିଉଜ ମ୍ୟାଗାଜିନ । ହରିହର ପଟେଲ ସେତେବେଳେ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ମନ୍ତ୍ରୀମଣ୍ଡଳରେ ଶିଳ୍ପ ମନ୍ତ୍ରୀ ଥିଲେ ।

# ନିତ୍ୟାନନ୍ଦ କାନୁନଗୋ

କଟକ, ୨୨ ଏପ୍ରିଲ ୭୧

[ ମୁଁ ପିଲାଦିନରୁ ନାସ୍ତିକ ଥିଲି ଏବଂ ହଠାତ ମୋର ଇଚ୍ଛା ହେଲା ଯେ ମୁଁ ହିନ୍ଦୁ ଧର୍ମ ଛାଡ଼ି ବୁଦ୍ଧ ଧର୍ମ ଗ୍ରହଣ କରିବି । ନିତ୍ୟାନନ୍ଦ କାନୁନଗୋ (ବିଖ୍ୟାତ କଂଗ୍ରେସ ନେତା, ମନ୍ତ୍ରୀ ଓ ପରେ ରାଜ୍ୟପାଳ) ସେତେବେଳେ ଓଡ଼ିଶାରେ ବୌଦ୍ଧ ଧର୍ମ ସଂସ୍କାର କର୍ତ୍ତା ଥିଲେ । ମୁଁ ତାଙ୍କ ସହିତ ଏ ବିଷୟରେ ସାକ୍ଷାତ କରିଥିଲି ।

ମୁଁ ସେତେବେଳେ ଓଡ଼ିଶାର ଚିତ୍ରକଳା ଉପରେ କାମ କରିବାକୁ ଚାହୁଁଥିଲି । କଲିକତାର ଓ.ସି. ଗାଙ୍ଗୁଲି ସେତେବେଳେ ଥିଲେ ଓଡ଼ିଶାର ଚିତ୍ରକଳା ଉପରେ କାମ କରିଥିବା ଏକମାତ୍ର ବ୍ୟକ୍ତି । ସେ ନିତ୍ୟାନନ୍ଦ କାନୁନଗୋଙ୍କର ବନ୍ଧୁ ଥିଲେ ଏବଂ ମୁଁ ଗାଙ୍ଗୁଲିଙ୍କୁ ଭେଟିବା ପାଇଁ ନିତ୍ୟାନନ୍ଦ କାନୁନଗୋଙ୍କର ସାହାଯ୍ୟ ଚାହୁଁଥିଲି । ନିତ୍ୟାନନ୍ଦ କାନୁନଗୋଙ୍କର ଚିଠିଟି ଏହି ଦୁଇଟି ବିଷୟରେ ।

ଶେଷରେ ମୋର ବୌଦ୍ଧ ହେବା ନୋହିଲା, କାରଣ ମତେ କୁହାଗଲା ଯେ ବୌଦ୍ଧଧର୍ମରେ ଯେତେଗୁଡ଼ିଏ ବିଭିନ୍ନ ମତ ଅଛି ସେଥିରୁ ଗୋଟିଏକୁ ବାଛି ସେଥିରେ ଦୀକ୍ଷିତ ହେବାକୁ ହେବ; ଏଇ କଥାରୁ ମୋର ଆଗ୍ରହ ପୂରାପୂରି ଭାଙ୍ଗିଗଲା ।

ମୁଁ ପରବର୍ତ୍ତୀ ସମୟରେ ଗାଙ୍ଗୁଲିଙ୍କୁ ସାକ୍ଷାତ କରିଥିଲି, କିନ୍ତୁ ସେତେବେଳକୁ ତାଙ୍କର ମସ୍ତିଷ୍କ ବିଭ୍ରମ ହୋଇସାରିଥିଲା । ମାର୍ଚ୍ଚ ୧୯୭୧ରେ ମୁଁ ଯେଉଁ ଚିତ୍ର ପ୍ରଦର୍ଶନୀ କରିଥିଲି ନିତ୍ୟାନନ୍ଦ କାନୁନଗୋ ତା ଉନ୍‌ମୋଚନ କରିଥିଲେ । ]

22 April' 71

Dear J.P.,

I am enclosing copy of a letter of Mr. O.C. Gangoly, which he had written to me sometime back.

This is to give you an idea of the problem on which he wrote to me. I am also sending you a letter of introduction separately.

I have 3 books for you; 2 of them on Buddha. The smaller one is the Light of Assia by Edwin Arnold, which I have read several times and still find pleasure in reading it. Perhaps you have read it yourself. The other one is the biggish volume. You need not go through all the pages. I would suggest you to read the forward by Radhakrishnan and the introductory chapters. Thereafter you may pick and choose from the other chapters. The other book on Abanindra Tagore may be found to be interesting. If you feel interested in any of the essays, I may suggest you other books by other authors for follow up. I have been deeply impressed by your aesthetic interest.

May God bless you.

Yours sincerely,

(N. Kanungo)

# ସଦାଶିବ ରଥଶର୍ମା

## ପୁରୀ, ୭ ମେ ୭୧ ଓ ପରବର୍ତ୍ତୀ

[ ଭୁବନେଶ୍ୱରରେ ଥିବା ସମୟରେ ମୁଁ ଓଡ଼ିଶାର ଚିତ୍ରକଳା ଉପରେ କିଛି କାମ କରିବା କଥା ଭାବିଥିଲି ଏବଂ ତଥ୍ୟ ସଂଗ୍ରହ କରୁଥିଲି । ସେତେବେଳକୁ ଏଲିସ ବୋନର ଓ ସଦାଶିବ ରଥଶର୍ମାଙ୍କର 'ଶିଳ୍ପ ପ୍ରକାଶ' ବହି ପ୍ରକାଶ ପାଇଥାଏ । ପୁରୀର ପଣ୍ଡିତ ରଥଶର୍ମାଙ୍କ ପାଖରେ ଓଡ଼ିଆ ଚିତ୍ରକଳା ବିଷୟରେ ପୋଥି ଥିବା ଖବର ପାଇ ମୁଁ ତାଙ୍କ ସହିତ ଯୋଗାଯୋଗ କରିଥିଲି । ଏହି ସମୟରେ ମୁଁ ଏ କାମ କରିବା ପାଇଁ ନେହରୁ ଫେଲୋଶିପ ପାଇଁ ଦରଖାସ୍ତ କରିଥିଲି, କିନ୍ତୁ ତା ପାଇ ନ ଥିଲି । ୧୯୭୩ରେ ମୁଁ ଦିଲ୍ଲୀ ଚାଲିଗଲି ଏବଂ ୧୯୭୯ରେ ହୋମି ଭାବା ଫେଲୋଶିପ ପାଇ ଓଡ଼ିଶାର ଚିତ୍ରକଳା ଉପରେ ଗବେଷଣା ଆରମ୍ଭ କରିଥିଲି । ଏହି ଗବେଷଣା ସମୟରେ ମୁଁ ପୁଣି ଥରେ ରଥଶର୍ମାଙ୍କ ସହିତ ଯୋଗାଯୋଗ କରିଥିଲି । ସେ ଦିନ ତାଙ୍କର ମୌନବ୍ରତ ଥିବାରୁ କାଗଜରେ ଲେଖି ମୋ ସହିତ ବାର୍ତ୍ତା ବିନିମୟ କରିଥିଲେ । ]

ପୁରୀ<br>୭.୫.୭୧

ପ୍ରିୟ ମହାଶୟ,

ଶ୍ରୀମନ୍ଦିରର ଗୁରୁଦାୟିତ୍ୱରୁ ଅବ୍ୟାହତି ନିମନ୍ତେ ମୁଁ ସପ୍ତାହକ ପୂର୍ବରୁ ଅତ୍ୟନ୍ତ ବ୍ୟସ୍ତ ଅଛି । ସେ ଦିନ ପଠାଇ ପାରିଲିନି ତାହାପୂର୍ବରୁ ୨ ଗୋଟି କାର୍ଯ୍ୟ ଅଛି । ଗୋଟିଏ ତାହାର କପି ରଖିବା ଓ ଅନ୍ୟଟି ମି ଯୋଶୀଙ୍କର ସହ ସାମାନ୍ୟ କଥାବାର୍ତ୍ତା । କପି କରିବାକୁ ମୁଁ ବ୍ୟବସ୍ଥା କରିଛି - ମୁଁ ତାହା ମୋର କପି କରିବା ପଣ୍ଡିତ ଜଟାଧାରୀଙ୍କୁ ଦେଇଛି ତାହା ୧୨ ତାରିଖ ସୁଦ୍ଧା ଦେବେ । ମୁଁ ତାହାପରେ ପୋଥି ନେଇ ଭୁବନେଶ୍ୱର ଯିବି ଯୋଶୀଙ୍କ ସହ କଥାବାର୍ତ୍ତା କରି ପୋଥିଟି ଦେଇ ଆସିବି ।

ମୁଁ ଯେତେବେଳେ ଆପଣଙ୍କୁ ପୋଥିଟି ଦେବାକୁ କହିଛି ତେଣୁ ଏଥିରେ ଦ୍ୱିତିୟ କଥା କିଛି ନାହିଁ । ଏକେତ ଚନ୍ଦନ ଯାତ୍ରାର ବ୍ୟତିକ୍ରମ ଅସମୟରେ ଯାତ୍ରାନିର୍ବାହ

ହେଉନାହିଁ ତେଣୁ କେବଳ ସାକ୍ଷାତ ହେବ ମାତ୍ର ମୋର ସୁବିଧା କରି ୧୩ ତାରିଖ ପରେ ଯିବି । ମି: ଯୋଶୀ ଜୀଙ୍କ ସହ କଥାବାର୍ତ୍ତା ସର୍ବାଦୌ ଆବଶ୍ୟକ । ଶ୍ରୀ ବେଣୁ ବାସ୍ତବରେ ମୋ ପାଖକୁ ବାରମ୍ବାର ଆସିଛନ୍ତି ମାତ୍ର ମୋର ଉପାୟାନ୍ତର ନାହିଁ ।

ଆପଣଙ୍କର

ଶ୍ରୀ ସଦାଶିବ ରଥଶର୍ମା

**ଓଡ଼ିଶା ସଂସ୍କୃତି ବିଭାଗର ଅଫିସର ଅର୍ଜୁନ ଯୋଶୀ ।**

ମହାଶୟ,

ମୁଁ ୨୭ରେ ଶିକୁଳା ଯାଇ ୨ ଦିନ ଅପେକ୍ଷା କରି ବଡ଼କଷ୍ଟରେ ଫେରିଲି । ସେ ପାରଳାଖେମୁଣ୍ଡି ଯାଉଥିଲେ । ମୁଁ ତାଙ୍କ ପାଖକୁ ପତ୍ର ଦେଇଚି ଓ ସେ ଗତକାଲି ଲୋକ ଦ୍ୱାରା ଖବର ଦେଇଛନ୍ତି ବାହୁଡ଼ାକୁ ଅବଶିଷ୍ଟ ୬ ପତ୍ର ନେଇ ପୁରୀରେ ମୋତେଦେବେ । ଆସିଯାଇଥିବ ।

(୨) ମୋର ଦେହ ଭଲ ନାହିଁ । ମୋର ସ୍ତ୍ରୀ ମଧ୍ୟ ବେମାର ଦୁର୍ଭାଗ୍ୟକୁ ଆଜି ମୋର ମୌନ ଅନ୍ୟ କିଛି ଥିଲେ କହନ୍ତୁ ମୁଁ ତଦନୁପାତରେ କାର୍ଯ୍ୟ କରିବି ।

ମୋର ଟିକେଟ୍ ସେମାନେ ୨/୩ ଦିନ ମଧ୍ୟରେ ପଠାଇଦେଉଛନ୍ତି ବୋଲି ଲେଖିଛନ୍ତି ମୁଁ ୯ ତାରିଖ ଯୁଲାଇରେ ଯିବାର ସ୍ଥିର କରିଥିଲି ଭିସା ପାଇ କଲିକତା । ମୁଁ ଏହି ସପ୍ତାହରେ ଯିବି ଓ ସେଠାରେ ଟିକେଟ୍ ପାସ୍‌ପୋର୍ଟ ସବୁ ଦେଖାଇ କଅଣ ହେଲା ଲେଖିବି । ଦିଲ୍ଲୀକୁ ୧ ମାସ ୫ ଦିନ ।

ଆପଣ ଯଦି କଲିକତା ଯାଉଛନ୍ତି ତେବେ ବଡ଼ ଉତ୍ତମ ହୁଅନ୍ତା ଯେ ଆମେରିକାର କନସୋଲେଟଙ୍କ ସହ ଟିକେ ସାମାନ୍ୟ ସାକ୍ଷାତ କରିପାରନ୍ତେ କି ?

୧୧.୬.୭୯

## ମିନୁ ମୁଖାର୍ଜୀ

କଲିକତା, ୨୭ ମେ ୭୧ ଓ ପରବର୍ତ୍ତୀ

[ ମୁଁ ସେତେବେଳେ ମଝିରେ ମଝିରେ କଲିକତା ଯିବା ବେଳେ ସେଠାରେ ସାଉଥ କ୍ଲବ୍‌ରେ ଟେନିସ୍ ଖେଳିବା ବେଳେ ମୋର ପରିଚୟ ହୋଇଥିଲା ପ୍ରସିଦ୍ଧ ଖେଳାଳୀ ଜୟଦୀପ ମୁଖାର୍ଜୀଙ୍କ ସହିତ । ପରେ ତାଙ୍କର ବାପା ମା – ଅଧିପ ଓ ମିନୁ ମୁଖାର୍ଜୀ – ମଧ ମୋର ବନ୍ଧୁ ହୋଇଥିଲେ । ମିନୁ ମୁଖାର୍ଜୀ ଡକୁମେଣ୍ଟାରି ତିଆରି କରୁଥିଲେ, ଏବଂ ସି.ଆର. ଦାସଙ୍କ ପରିବାରର ହୋଇଥିବାରୁ କଲିକତାର ଉଚ୍ଚ ସମାଜରେ ବିଶେଷ ଜଣାଶୁଣା ଥିଲେ । ସେ ମୋତେ ସତ୍ୟଜିତ ରାୟଙ୍କ ସହିତ ପରିଚିତ କରାଇ ଦେଇଥିଲେ ।

୧୯୭୫ରେ ମୁଁ କଲିକତାରେ ତାଙ୍କ ଝିଅ ବୃନ୍ଦାର ବାହାଘରକୁ ଯାଇଥିଲି । ଶେଷ ପତ୍ରଟି ବୃନ୍ଦାଙ୍କର; ଏଇଟି ତାଙ୍କର ସ୍ୱାମୀ ଶ୍ରୀନିବାସନ ଲୁସାକାରେ ରାଷ୍ଟ୍ରଦୂତ ଥିଲା ବେଳେ ଲେଖିଥିଲେ ।]

May 27th 1971

Dear J.P.,

Further to our conversation in Calcutta, I have made some progress re: the production of documentary films and commercials.

I shall be very grateful to you if you can find out from the Tourism Dept. of your government, if there is any scope of getting commissioned by them.

I believe the big projects also make these films sometimes.

I hope to meet you here on your way to Delhi, and if you can get some information by that time I can go ahead.

I shall sign my contract from the 1st of July 1971.

So I want to proceed with the ground work. I hope you won't mind me making these unusual requests.

Thanking you in advance. Hope this finds you well.

With regards,

Yours sincerely

Minudi

Feb. 10th 1975

Dear J.P.,

We were so happy that you could come for Brinda's wedding. I wish we could have seen more of you. Anyway - next time you must make it a point to keep atleast one evening free for dinner with us.

Brinda loved the sari that you gave her. She was wanting a sari like that. She will be writing to you soon.

Kris (my son-in-law) has left already. And Brinda will be leaving around the 20th. So we shall be quite alone & miserable.

That's all for now. Hoping to seeing you again soon.

With regards.

Yours sincerely

Minudi

Lusaka

June 17th

My dear JP Kaka,

This is a very belated letter to thank you for the beautiful saree you gave me on my marriage. I had really always wanted one like that. Also thank you for handing over the parcel to Lalit Mansingh. It has reached me quite safely.

I am settled in Lusaka now. It is a nice place. If you should come to Africa on any work please do come and visit us.

Hope this finds you well.

Yours Sincerely

Brinda Srinivasan

(Adhip Murkerjee's daughter)

## ସତ୍ୟଜିତ ରାୟ

କଲିକତା, ୧୯ ନଭେମ୍ବର ୭୧ ଓ ପରବର୍ତ୍ତୀ

[ ମୁଁ ୧୯୫୫ରେ ଆଲାହାବାଦ ଯିବା ପରେ କବିତା ଲେଖା ବନ୍ଦ କରି ଦେଇଥିଲି । କଳାହାଣ୍ଡିରୁ ଆସି ଭୁବନେଶ୍ୱରରେ ଥିବା ସମୟରେ ବନ୍ଧୁ ଅଖିଳ ପଟ୍ଟନାୟକ, ବିବେକ ଜେନା, ଅନନ୍ତ ମହାପାତ୍ର ଇତ୍ୟାଦିଙ୍କ ପ୍ରରୋଚନାରେ ପୁଣି ଲେଖିବାକୁ ଆରମ୍ଭ କଲି ୧୯୭୦ରୁ । ଯେତେବେଳେ କବିତାକୁ ଏକାଠି କରି ଛାପିବା କଥା ଉଠିଲା, ତାର ଦାୟିତ୍ୱ ନେଲେ ଅନନ୍ତ ମହାପାତ୍ର ।

ଅନନ୍ତ ମହାପାତ୍ର କବିତା ବହି ଛାପିବା ବେଳେ ଇଚ୍ଛା କଲେ ଯେ ପ୍ରଚ୍ଛଦ ପାଇଁ ସତ୍ୟଜିତ ରାୟଙ୍କୁ ଅନୁରୋଧ କରାଯାଉ । ସେ ସତ୍ୟଜିତଙ୍କ ବନ୍ଧୁ କିରଣ୍ମୟ ସାହାଙ୍କୁ କହିଲେ ଏବଂ ମୁଁ ମିନୁ ଦିଙ୍କୁ । ଶେଷରେ ସତ୍ୟଜିତ ରାୟ ପ୍ରଚ୍ଛଦ କରିବାକୁ ରାଜି ହେଲେ । ]

Dear Mr. Das,

Herewith the finished design for the book jacket. I'm afraid you will have to get the lettering executed by somebody in the spaces indicated. The name of the book will go on the first block (in green), your name in the 2nd block (in deep gray). I'm sorry I've kept you waiting all this time, but I really have been exceedingly busy.

With all good wishes,

Satyajit Ray

26.1.72

Dear JP,

Thanks for the book. I must say it does look quite distinguished. Now that I know you're a painter, I feel you should have designed the jacket yourself. However...

Yes - we're making good progress on Benode Bihari and hope to be working on it all through February. If you're in Calcutta after the 10th of February (before that we'll be busy shooting in Delhi, Benares et.), do get in touch with me.

Best Wishes

Satyajit Ray

16 June, 1972

Dear J.P.,

Many thanks for your letter of 12th June. I was in Santiniketan looking for locations in the nearby villages for *Ashani Sanket*. Although I got back three days ago, it was not possible to go and see your play this time. I've really been too busy & also, not quite in the right frame of mind for it. I hope there will be another occassion in the future (not too immediate!) for me to see it.

*The Inner Eye* is finished and awaits the approval of the Film Advisory Board in Bombay.

With all good wishes,

Yours

Manikda

ସତ୍ୟଜିତ ରାୟ ଶିଳ୍ପୀ ବିନୋଦ ବିହାରୀ ମୁଖୋପାଧ୍ୟାୟଙ୍କ ଉପରେ *The Inner Eye* ଚଳଚ୍ଚିତ୍ର କରିଥିଲେ ।

୧୭ ଜୁନ ୧୯୭୨ରେ ନାଟକ 'ସୂର୍ଯ୍ୟାସ୍ତ ପୂର୍ବରୁ' ବଙ୍ଗଳା ଅନୁବାଦରେ କଲିକତାରେ ମଞ୍ଚସ୍ଥ ହୋଇଥିଲା ।

## ରାଜିନ୍ଦର ପଲ୍

ଦିଲ୍ଲୀ, ୧୬ ଜାନୁୟାରୀ ୭୨

[ ରାଜିନ୍ଦର ପଲ୍ ସେତେବେଳେ ଇଂରେଜୀର ଏକମାତ୍ର ନାଟକ ପତ୍ରିକା *Enact* ସମ୍ପାଦନା କରୁଥିଲେ । ମୁଁ ଏ ପତ୍ରିକାର ଗ୍ରାହକ ଥିଲି । ସତ୍ୟଜିତ ରାୟଙ୍କର ବନ୍ଧୁ ଓ ବଙ୍ଗଳା ନାଟକ ଉପରେ ଲେଖୁଥିବା କିରଣ୍ମୟ ରାହାଙ୍କ ଅନୁରୋଧରେ ମୁଁ କିଛି ଓଡ଼ିଆ

ନାଟକର ସମୀକ୍ଷା କରି ଏହି ପତ୍ରିକାକୁ ପଠାଇଥିଲି । ତା ମଧ୍ୟରୁ ଅନ୍ୟତମ ଥିଲା ଅନନ୍ତ ମହାପାତ୍ର ନିର୍ଦ୍ଦେଶିତ, ମନୋରଞ୍ଜନ ଦାସଙ୍କ ଲିଖିତ, ହେମନ୍ତ ଦାସ ଅଭିନୀତ 'ଅମୃତସ୍ୟ ପୁତ୍ର' ।

ପରବର୍ତ୍ତୀ ସମୟରେ ମୁଁ ଦିଲ୍ଲୀ ଯିବା ପରେ ରାଜିନ୍ଦର ମୋର ବିଶେଷ ବନ୍ଧୁ ହୋଇଥିଲେ ଓ ଦିଲ୍ଲୀରେ ମଞ୍ଚସ୍ଥ ମୋର ନାଟକର ସମୀକ୍ଷା ତାଙ୍କ ପତ୍ରିକାରେ ପ୍ରକାଶ କରିଥିଲେ । ମୋର *ସୂର୍ଯ୍ୟାସ୍ତ ପୂର୍ବରୁ, ସବାଶେଷ ଲୋକ* ଓ *ଅସଙ୍ଗତ ନାଟକ*ର ଇଂରାଜୀ ଅନୁବାଦ ମଧ୍ୟ ତାଙ୍କ ପତ୍ରିକାରେ ପ୍ରକାଶ ପାଇଥିଲା । *ଅସଙ୍ଗତ ନାଟକ*ର ଇଂରେଜୀ ଅନୁବାଦ ପ୍ରକାଶ ପାଇବା ବେଳେ ମୁଁ ବହିଟିକୁ ରାଜିନ୍ଦର ପଲ୍‌ଙ୍କୁ ଉତ୍ସର୍ଗ କରିଥିଲି ।

ପରେ ରାଜିନ୍ଦର ପଲ୍ ସଙ୍ଗୀତ ନାଟକ ଏକାଡେମିର ଉପସଭାପତି ହୋଇଥିଲେ । ]

Dear Mr. Das,

Thank you very much for your contribution. We shall be publishing it in the next issue which is the annual number to be out by 2 Febrary.

I am sorry I could not reply to you earlier when we published your last review tough Mr. Raha had very kindly passed it on to me and I had a mind to write to you. I hope you got the issue of the magazine in which we publised the article. I had also put you on the regular list of subscribers and you should have been getting the magazine regularly. Please let me know if you are not getting it.

I would be very interested in knowing about the activity in Bhuvaneshwar. If you could send us a quarterly or a bi-monthly report on the theatre activity there, we would be very grateful. As you know, ENACT is not in a position to pay substantially to its contributors. It on the other hand even asks contributors,

who are well placed, to help the magazine in getting advertisements for it and enlist more subscribers. If you are in a position to do any of these things, I'll be grateful to you for your help. If not, you are welcome as a contributor and please continue writing on the Oriya theatre.

Expecting a reply!

Yours sincerely,
(Rajinder Paul)
Editor, Enact

## ଚିନ୍ତାମଣି ବେହେରା

ବଲାଙ୍ଗୀର, ୫ ଫେବୃଆରି ୭୨

[ ମୁଁ ସ୍କୁଲରେ ପଢିବା ବେଳେ (୧୯୪୯-୫୫) କବିତା ଲେଖୁଥିଲି ଏବଂ ସେଥିରୁ କିଛି କିଛି ପତ୍ର ପତ୍ରିକାରେ ପ୍ରକାଶ ପାଇଥିଲା । ସେହି ସୂତ୍ରରେ ସେତେବେଳେ ଚିନ୍ତାମଣି ବେହେରାଙ୍କ ସହିତ ସମ୍ପର୍କ ହୋଇଥିଲା ।

୧୯୭୧ରେ ମୋର 'ପ୍ରଥମ ପୁରୁଷ' ବହି ପ୍ରକାଶ ପାଇଲା । ବହିଟି ପାଇ କବି ଓ ସମାଲୋଚକ ଚିନ୍ତାମଣି ବେହେରା ଏହି ଦୀର୍ଘ ଚିଠିଟି ଲେଖିଥିଲେ । ]

ବଲାଙ୍ଗୀର
୫ ।୨ ।୭୨

ଶ୍ରଦ୍ଧେୟ ଜଗନ୍ନାଥ ବାବୁ,

ମୋର ଆନ୍ତରିକ ପ୍ରଣତି, ଶୁଭେଚ୍ଛା ଓ ନମସ୍କାର ଗ୍ରହଣ କରିବେ । ଆପଣ ପଠାଇଥିବା 'ପ୍ରଥମ ପୁରୁଷ' ତା୩୧ରେ ମୁଁ ପାଇଲି । ମୁଁ ଯେ ସ୍ମରଣରେ ରହିଛି, ତାହାହିଁ ମୋର ସୌଭାଗ୍ୟ ।

ଗତବର୍ଷ ଭୁବନେଶ୍ୱରରେ ମହାପାତ୍ର ନୀଳମଣି ସାହୁଙ୍କ ସହିତ ଆପଣଙ୍କ ପ୍ରତିଭା ସଂପର୍କରେ ଆଲୋଚନା ହୋଇଥିଲା ଏବଂ ଆପଣଙ୍କ ଦୀର୍ଘ ନୀରବତା (ସୃଷ୍ଟି କ୍ଷେତ୍ରରେ) ପାଇଁ ଆମେ ଉଭୟେ ବ୍ୟଥିତ ହୋଇଥିଲୁ । 'ପ୍ରଥମ ପୁରୁଷ' ଆମ ପାଇଁ ତ ଆଶା ଓ ଆଶ୍ୱାସନାର ବାର୍ତ୍ତାବହ ହେବା ସ୍ୱାଭାବିକ; ଓଡ଼ିଶାର ବହୁ କାବ୍ୟାମୋଦୀ ପାଠକଙ୍କ ପାଇଁ ମଧ୍ୟ ଏହା ନିଶ୍ଚିତ ଭାବରେ ଆପଣଙ୍କ ସଫଳ ସିଦ୍ଧିର ସାଙ୍କେତିକ, ଯେଉଁମାନେ କି ପାଉଥିଲେ ଆପଣଙ୍କ ସୃଜନୀ ପ୍ରତିଭାର ପ୍ରଥମ ପ୍ରତିଶ୍ରୁତି । ଲେଖନୀ ଏଣିକି ମନ୍ଥର ବା ନିଷ୍କ୍ରିୟ ନ ହେଉ, ଏହାହିଁ ମୋର ବ୍ୟକ୍ତିଗତ ଅନୁରୋଧ । ଅଧିକାଂଶ କବିତାଗୁଡ଼ିକର ଅନ୍ତର୍ନିହିତ ରସଚେତନା, ପ୍ରଥମ ପୁରୁଷ ମାଧ୍ୟମରେ ତୃତୀୟ ତଥା ଯୁଗପୁରୁଷର ଆତ୍ମିକ ସଂକଟର ଉପଲବ୍ଧି ଏବଂ ତାର ରସୋତ୍ତୀର୍ଣ୍ଣ ପ୍ରକାଶ ଭଂଗୀ ବାସ୍ତବରେ ମୋତେ ମୁଗ୍ଧ କରିଛି । ଅନ୍ୟ କିଏ କିପରି ଏହାକୁ ଘେନିଥିବ, ତା' ମୁଁ ଜାଣେନା ।

ପ୍ରଥମେ 'ପ୍ରଜାତଂତ୍ର'ରେ ଏହାର ସମୀକ୍ଷା (ଶ୍ରୀମାନ୍ ହରପ୍ରସାଦ ଦାସଙ୍କ ଦ୍ୱାରା ଲିଖିତ) ମୁଁ ପଢିଥିଲି । ଗତ ତା୩୦ରେ ସ୍ଥାନୀୟ ଏକ ପୁସ୍ତକ ଦୋକାନରେ ବହିଟିକୁ ଦେଖି ରାମାକାନ୍ତ ବାବୁଙ୍କ 'ନିଷିଦ୍ଧ ମୃଗୟା' ସହିତ କିଣି କରି ମଧ୍ୟ ଆସିଥିଲି । ତା'ପରେ ଦିନ ଆପଣ ପଠାଇଥିବା ବହିଟି ପାଇ କିଣିଥିବା ବହିଟିକୁ ଅନ୍ୟ ଜଣେ ବଂଧୁଙ୍କୁ ଦେଇଦେଲି । ସାଂପ୍ରତିକ କାଳର ବହୁ ସୃଷ୍ଟିର ଅଯଥା ସ୍ଫୀତି, ଶ୍ରମସାଧ୍ୟ ଦୁର୍ବୋଧ୍ୟତା, ଅଗଭୀର ଜୀବନ-ଜିଜ୍ଞାସା ଏବଂ ଅହେତୁକ କ୍ଲିଷ୍ଟ ପ୍ରକାଶଭଂଗୀ ମଧ୍ୟରେ 'ପ୍ରଥମ ପୁରୁଷ' ନିର୍ମଳ ଓ ଶୁଦ୍ଧ କବିତ୍ୱର ଆଲୋକ-ବର୍ତ୍ତିକା ପ୍ରକାଶ କରିବ ବୋଲି ମୋର ବିଶ୍ୱାସ । ଆପଣଙ୍କ ଆଦ୍ୟ ଜୀବନର ସୃଷ୍ଟିସମ୍ଭାରକୁ ଏକ ସ୍ୱତଂତ୍ର ସଂକଳନ ଭାବରେ ପ୍ରକାଶ କରନ୍ତୁ । ନିୟମିତ ଭାବରେ ମୁଁ ସେଗୁଡ଼ିକୁ ପଢୁଥିଲି ଏବଂ ଆଶାୟୀ ଦୃଷ୍ଟିରେ ପ୍ରତିଭାର ବିକାଶ ମଧ୍ୟ ଲକ୍ଷ୍ୟ କରୁଥିଲି । କିନ୍ତୁ ହଠାତ୍ ହୋଇଗଲେ ଆପଣ ନୀରବ । ସେଥିରେ ମୁଁ ବ୍ୟଥିତ ମଧ୍ୟ ହୋଇଥିଲି । ଯାହାହେଉ, ହଜିଲା ରତ୍ନକୁ ଫେରିପାଇବାରେ ଯେଉଁ ଆନନ୍ଦ, ସେ ଆନନ୍ଦ ମୁଁ ଆଜି ଉପଲବ୍ଧି କରିଛି 'ପ୍ରଥମ ପୁରୁଷ'କୁ ଅଧ୍ୟୟନ କରି । ସମୟ ଓ ସୁବିଧା ଦେଖି ତାର ଏକ ସମୀକ୍ଷା ମଧ୍ୟ ମୁଁ ଲେଖିବି । ନିକଟ ଭବିଷ୍ୟତରେ କେବେ ଭୁବନେଶ୍ୱର ଗଲେ ଘରକୁ ନିଶ୍ଚୟ ଯିବି । ମୋତେ ଚିହ୍ନିପାରିବେ କି ନା, କେଜାଣି ? ଆପଣଙ୍କ ବିବାହ ଉତ୍ସବରେ ଯୋଗଦାନ ପରେ ମୁଁ ମଧ୍ୟ ଆପଣଙ୍କୁ ଆଉ ଭେଟିନାହିଁ । ଜୀବନଗ୍ର

ବହୁ ଉତ୍ଥାନ-ପତନ ସୁଖ-ଦୁଃଖ, ଆବର୍ତ୍ତ-ପ୍ରବାହ, ସଂକଟ ଓ ସମାଧାନ ମଧ୍ୟରେ ଏ ପର୍ଯ୍ୟନ୍ତ ଗତି କରି ଚାଲିଛି । ସାକ୍ଷାତରେ ସୁଖ-ଦୁଃଖର କଥା କହିବି ।

ଏଠାରେ ଅନ୍ୟ ସବୁ କୁଶଳ । ବେହିସାବୀ ମନ ଘେନି ବହୁ କ୍ଷୟକ୍ଷତି ସହିଆସିଛି । ସେ ଯାହାହେଉ, ପୁଣି ଥରେ ମୋର ଅନୁରୋଧ ଲେଖନୀକୁ ନିରନ୍ତର ଚାଳନା କରିବା ପାଇଁ । ମରାଳର ଅନୁପସ୍ଥିତିରେ କାକ-ବକ ମଧ୍ୟ ବିପଦ ଓ ସଂକଟ ସମୟରେ ସାରସ୍ୱତ ମର୍ଯ୍ୟାଦା ଲାଭ କରିଥାନ୍ତି ଏବଂ ଆମ ସାହିତ୍ୟରେ ଏହାର ଦୃଷ୍ଟାନ୍ତ ବିରଳ ନୁହେ । ଏକଥା କହିବାର ସତ୍‌ସାହସ ମଧ୍ୟ ଅନେକ ହରାଇ ବସିଲୁଣି । ଆପଣଙ୍କର ସର୍ବାଙ୍ଗୀନ କୁଶଳ କାମନା ସହିତ ପ୍ରତିଭାର ଉତ୍ତରୋତ୍ତର ବିକାଶ ଓ ପ୍ରତିଷ୍ଠା କାମନା କରି ରହୁଛି । ଇତି ।

ଶୁଭାନୁଧ୍ୟାୟୀ
ଚିନ୍ତାମଣି ବେହେରା

## ରାଜକିଶୋର ରାୟ

### ବାଙ୍କୀ, ୧୩ ମେ ୭୨

[ ପ୍ରସିଦ୍ଧ ଲେଖକ ଓ ଓଡ଼ିଆ ଅଧ୍ୟାପକ ରାଜକିଶୋର ରାୟଙ୍କ ସହିତ ମୋର ପରିଚୟ ସାମାନ୍ୟ ଥିଲା । ମୁଁ ଦିଲ୍ଲୀ ଆସିବା ପରେ ସେ ଥରେ ସସ୍ତ୍ରୀକ ଏଠାକୁ ଆସିଥିଲେ ଏବଂ ତା ପରଠାରୁ ଆମର ସଂପର୍କ ବଢିଯାଇଥିଲା । ଏ ଚିଠିରେ ଉଲ୍ଲେଖ କରିଥିବା ବହିଟି 'ପ୍ରଥମ ପୁରୁଷ', ଯାହା ୧୯୭୧ରେ ପ୍ରକାଶିତ ହୋଇଥିଲା । ]

ବାଙ୍କୀ,
୧୩।୫।୭୨

ଶ୍ରୀମାନ୍ ଜଗନ୍ନାଥ ପ୍ରସାଦ,

ମୁଁ ପ୍ରତିଶ୍ରୁତି ଦେଇଥିଲି ରବିବାର ସକାଳେ ତୁମ ଘର ଭବନରେ ସାକ୍ଷାତ୍ କରିବି । ମାତ୍ର ଅପରିହାର୍ଯ୍ୟ କାରଣ ଯୋଗୁ ମୁଁ ରବିବାର ଭୁବନେଶ୍ୱର ଯାଇ ପାରିଲି ନାହିଁ । ସେଥିପାଇଁ ମୁଁ ଦୁଃଖିତ । ଆଉ କେବେ ଗଲେ ମୁଁ ଆନନ୍ଦର ସହିତ ବହିଟି ଆଣିବି । ଅଥବା ତୁମେ ଯଦି

କୌଣସି ପ୍ରକାରେ ବହିଟି ପଠାଇଦିଅନ୍ତୁ, ତେବେ ମୁଁ ଆଗରୁ ପାଇଯାଆନ୍ତି, ତୁମର ସାହିତ୍ୟ ସାଧନା ଏକ ଚମତ୍କୃତି ଆଣିଛି ଓଡ଼ିଆ କାବ୍ୟ କ୍ଷେତ୍ରରେ; ଏହା ଚିରନ୍ତନ ରହୁ । ତମର ସହଧର୍ମିଣୀ ଓ ତମେ ଆମମାନଙ୍କର ଶୁଭେଚ୍ଛା ନିଅ ।

ଶୁଭାନୁଧ୍ୟାୟୀ
ରାଜକିଶୋର ରାୟ

## ଭାନୁଜୀ ରାଓ

ମସୋରୀ, ୨୨ ଜୁଲାଇ ୭୨

[ କଟକରେ ଥିବା ସମୟରୁ କବି ଭାନୁଜୀ ରାଓଙ୍କ ସହିତ ମୋର ପରିଚୟ ଥିଲା । ବୋଧହୁଏ ୧୯୭୧ରେ ସେ ମସୋରୀ ଚାଲିଗଲେ । 'ପ୍ରଥମ ପୁରୁଷ'ର ବଙ୍ଗଳା ଅନୁବାଦ ପାଇଁ ସେ ମୋ ସହିତ ଯୋଗାଯୋଗ ରଖିଥିଲେ । ମୁଁ ୧୯୭୬ରେ ମସୋରୀ ଯାଇଥିବା ବେଳେ ତାଙ୍କ ସହିତ କିଛି ସମୟ କଟାଇଥିଲି । ପରବର୍ତ୍ତୀ ସମୟରେ ସେ ଯେଉଁ ଚିଠି ସବୁ ଲେଖିଥିଲେ ସେଥିରେ ପ୍ରକାଶକଙ୍କୁ ନେଇ ତାଙ୍କର କ୍ଷୋଭ ବିଷୟରେ ଜଣାଉଥିଲେ । ]

Musoorie
22.7.72

ପ୍ରିୟ ଜଗନ୍ନାଥ ବାବୁ,

ମୁଁ ଆପଣଙ୍କ ନିକଟରେ କ୍ଷମାପ୍ରାର୍ଥୀ । ଆପଣଙ୍କ ଚିଠି ବହୁତ ଦିନରୁ ପାଇଛି, ମାତ୍ର ହେଲା ଯୋଗୁଁ ଆଜି ସୁଦ୍ଧା ଜବାବ ଦେଇ ନାହିଁ । କଟକରେ ଥିବା ସମୟରେ ପରୀକ୍ଷାମୂଳକ ଭାବରେ ଆପଣଙ୍କର ଗୋଟିଏ କବିତାର ଅନୁବାଦ କରିଥିଲି । ମାତ୍ର କାନକୁ ମୋଟେ ଭଲରୁ ଶୁଭିଲା ନାହିଁ । ତେଣୁ ମୋ ବିଚାରରେ ମୋ ଦ୍ୱାରା ଏ ଅନୁବାଦ କାମ ସୂଚାରୁ ଭାବରେ ସମ୍ପନ୍ନ ହେବ ନାହିଁ । ମୁଁ ଅନୁବାଦ କଲେ ବିବେକ ନିକଟରେ ଅପରାଧୀ ରହିଯିବି । ପ୍ରାୟ ତିନିବର୍ଷ ତଳେ ସୀତାକାନ୍ତର ଗୋଟିଏ ଦୀର୍ଘ କବିତାର ବଙ୍ଗଳା ଅନୁବାଦ

'ଦୈନିକ-କବିତା'ରେ ପ୍ରକାଶ ପାଇଥିଲା । ମୋତେ ଏହା ଭଲ ଲାଗି ନାହିଁ । ମୋର 'ଦୀଘା' କବିତାର ଗୋଟିଏ ଅକ୍ଷମ ଅନୁବାଦ ଅତି ସମ୍ପ୍ରତି 'ସାତପୁରା'ରେ ପ୍ରକାଶ ପାଇଛି । ଅନୁବାଦିକ ଭଦ୍ରମହିଳା ମୋ ମନେ ହୁଏ ବଙ୍ଗଳା ଜାଣି ସୁଦ୍ଧା ନାହାନ୍ତି । ତେଣୁ ଯାହା ହେବାର କଥା ତାହାହିଁ ଘଟିଛି । ରାଗରେ ଦାନ୍ତ ନେସିଡ଼ିବା ଭିନ୍ନ ମୋର ଆଉ ଅନ୍ୟ ଗତି ନାହିଁ । ଓଡ଼ିଶାରେ ଭଲ ଭାବରେ ବଙ୍ଗଳା ଜାଣିଥିବା ଲୋକଙ୍କର ଏକାନ୍ତ ଅଭାବ । ତେଣୁ ଭରସି କରି ଆଉ କାହାରି ନାମ ମଧ୍ୟ ଆପଣଙ୍କ ନିକଟରେ ସୁପାରିଶ କରି ପାରୁନାହିଁ । ତେଣୁ ସତରେ ଆନ୍ତରିକ ଭାବରେ ମୁଁ ଦୁଃଖିତ ।

ଏଠି ମଝିରେ ବେଶ ବର୍ଷା ହୋଇଗଲା । ତାପରେ ଉଜ୍ଜ୍ୱଳ ଖରା । ଚାରିଆଡ଼ ହସି ଉଠିଲା । ମନେ ହେଲା ଦୁଃଖ, ଯନ୍ତ୍ରଣା, ବିଦ୍ୱେଷ ପ୍ରଭୃତି ଶବ୍ଦର ଅଭିଧାନ ବାହାରେ କୌଣସି ଅର୍ଥ ନାହିଁ । ପୁଣି 'ମ୍ୟାଲ ରୋଡ଼'ରେ ଉଜ୍ଜ୍ୱଳ ଗୋଧୂଳି ରଙ୍ଗର ବ୍ଲାଉଜ ପିନ୍ଧା ଶାବନା ଝିଅଙ୍କର ଭିଡ଼ ବେଶ ଜମି ଉଠୁଛି ।

ଆଶାକରେ ମୋତେ ଭୁଲ ବୁଝିବେ ନାହିଁ । ସମୟ ପାଇଲେ ଚିଠି ଦେବେ । ମୋର 'ନଦୀ/ନାରୀ/ନକ୍ଷତ୍ର' ଶୁଣିଥିଲି ଯନ୍ତ୍ରସ୍ଥ । ପ୍ରସବ ବେଦନାର ଅବସାନ ଘଟିଛି କି ନାହିଁ କେଜାଣି ?

ଶୁଭେଚ୍ଛା ନେବେ । ଇତି ।

ଭାନୁଜୀ ରାଓ

ସୀତାକାନ୍ତ: କବି ସୀତାକାନ୍ତ ମହାପାତ୍ର

ସାତପୁରା: ବଙ୍ଗଳା ପତ୍ରିକା

# ଅନାମିକା

## ଭୁବନେଶ୍ୱର, ୬ ଅକ୍ଟୋବର ୭୨

[ ସେ ସମୟରେ ପାରାଦୀପରେ ଏକ ଅଏଲ ରିଫାଇନେରି କରିବା ପାଇଁ ଦାବୀ ହୋଇଥିଲା ଏବଂ ନିଶାମଣି ଖୁଣ୍ଟିଆଙ୍କ ଉଦ୍ୟମରେ ଏକ ବିରାଟ ସଭା ମଧ୍ୟ ହୋଇଥିଲା । ଅମୃତ

ବଜାର ପତ୍ରିକାରେ ମୁଁ ଏ ବିଷୟରେ ଗୋଟିଏ ଲେଖା ଲେଖିଥିଲି ଏବଂ ଏଥିରେ ମୋର ଫଟୋ ମଧ୍ୟ ଛପା ହୋଇଥିଲା । ସେଇଟିକୁ ଦେଖି କେହି ଜଣେ ରହସ୍ୟ କରି ପରିହାସ ଛଳରେ ଏ ଚିଠିଟି ଲେଖିଥିଲେ । ]

ଭୁବନେଶ୍ୱର
୬।୧୦।୭୨

ମହାଶୟ,

ଆମର ଏତେ ଦିନର ପ୍ରତୀକ୍ଷା ସଫଳ ହେଲା ଯେ ଆମେ ଆପଣଙ୍କ ଫଟ ଅମୃତ ବଜାର ପତ୍ରିକାରେ ବାହାରିଥିବାର ଦେଖିଲୁ । କି ସୁନ୍ଦର ମନ ମତାଣିଆ ଚେହେରା ସତରେ ।। କିନ୍ତୁ ମନରେ ଏକ ଅବଶୋଷ ରହିଗଲା – ଆପଣ ନିଶ କାହିଁକି ରଖିନାହାନ୍ତି ଯେ ? ଦେଖିଲେ, ଆମେ ଆପଣଙ୍କ ଫଟରେ ନିଶ ରଖିଦେଇଛୁ – କେତେ ସୁନ୍ଦର ଦେଖାଯାଉଛି ।। ମାନେ ଆପଣଙ୍କର ଯେଉଁ ନାରୀମନଲୋଭା ସୌନ୍ଦର୍ଯ୍ୟ ତାହା ଶତଗୁଣ ବୃଦ୍ଧି ପାଇଛି – ଆମର ଗୋଟିଏ ଛୋଟ ମିନତି ରଖିବେ ? ଆପଣ ନିଶ ରଖନ୍ତୁ – ରଖିବେନାଁ ? ନ ହେଲେ ଆମର ମନ ବହୁତ ବହୁତ ଦୁଃଖ ହେବ ।

।।ଇତି।।

ସେ ନିଶ ରଖିଲେ ଚାରିବର୍ଷ ପରେ; ୧୯୭୬ରେ

## ସାନୁ ପଟ୍ଟନାୟକ

ଖୋର୍ଦ୍ଧା, ୩୧ ଅକ୍ଟୋବର ୭୨

[ 'ପ୍ରଥମ ପୁରୁଷ' ପ୍ରକାଶ ପରେ ମୋର କବିତାମାନ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇଥିଲା ଏବଂ 'ଦ୍ୱିତୀୟ ସକାଳ' ବୋଲି କବିତା ପ୍ରକାଶ ପାଇଥିଲା ବୋଧହୁଏ 'ମାନସ' ପତ୍ରିକାରେ । ସେତେବେଳେ ଭୁବନେଶ୍ୱରର ଉଦ୍ୟାନ ମାର୍ଗ ମୋର ଠିକଣା ଥିଲା ।

ମୋର ଓଡ଼ିଆ ଲେଖକ ବନ୍ଧୁମାନେ ସେମାନଙ୍କର ଲେଖା ପାଇଁ ପ୍ରଶଂସାସୂଚକ ଅଜସ୍ର ଫ୍ୟାନ ମେଲ ପାଉଥିବାର କହନ୍ତି; ମୋର କିନ୍ତୁ ସେ ଭଳି ସୌଭାଗ୍ୟ ହୋଇନାହିଁ ।

ଏଇ ଚିଠିଟି ମୋ ପାଇଁ ଥିଲା ସେତେବେଳର ଏକ ପ୍ରୀତିକର ଅନୁଭବ ।]

ମାନନୀୟ ମହାଶୟ,

'ପ୍ରଥମ ପୁରୁଷ' ପରେ 'ଦ୍ୱିତୀୟ ସକାଳ' ସବୁ କେମିତି ଖୁବ୍ ଆନନ୍ଦ-ଦାୟକ । ଖୁଉବ୍ । ପୂଜା ନବରବିରୁ ସେଇ ରବିଙ୍କୁ ଖୋଜୁଥିଲି - ଭାବୁଥିଲି, ଉଦ୍ୟାନମାର୍ଗରୁ ହୁଏତ ସବୁଜିମାରୁ ଟୋପାଏ ଛିଟିକି ପଡ଼ିଥିବ । ହେଲେ ନା । ତେବେ ବି ପୁଣି ଖୋଜିବି ତୃତୀୟ ସକାଳ - ଚତୁର୍ଥ ସନ୍ଧ୍ୟା ବା ଦ୍ୱିତୀୟ ପୁରୁଷ ମାନଙ୍କ ଭିତରୁ, ପାଇଲେ ଖୁସି ହେବି । ପାଇବି ନା ?

ବିରକ୍ତ ହେଲେ କି, ସମୟ ନଷ୍ଟ ହେଲା ବୋଲି ? (ଆରେ ବାବା କବିତା ଲେଖାର ମୁଡ୍ ଯେମିତି ମୁଁ ନଷ୍ଟ ନ କରିଥାଏ) ମତେ ତ ଚିହ୍ନି ନାହାନ୍ତି । ମୁଁ ସାନୁ ପଟ୍ଟନାୟକ । ଆପଣଙ୍କର ଉନ୍ନତି କାମନା କରି । ଇତି ।

## ଇନାମ ଆନସାରୀ

ଆଲିଗଡ଼, ୨୩ ଅକ୍ଟୋବର ୭୨

[ ପ୍ରଫେସର ଇନାମ ଆନସାରୀ ହାଇଦରାବାଦର କଳା ଇତିହାସ ବିଭାଗରୁ ଅବସର ନେବା ପରେ ତାଙ୍କର ବାନ୍ଧବ ଓଡ଼ିଶାର ସେ ସମୟର ରାଜ୍ୟପାଳ ଡକ୍ଟର ଏସ.ଏସ. ଆନସାରୀଙ୍କ ପାଖରେ ରହୁଥିଲେ । ମୁଁ ଭୁବନେଶ୍ୱରରେ ଯେଉଁ ଚିତ୍ରକଳା ପ୍ରଦର୍ଶନୀ କରିଥିଲି ସେଠାରେ ତାଙ୍କ ସହିତ ପରିଚୟ ହୋଇଥିଲା । ସେ ମୋର ଚିତ୍ର ଉପରେ ଏକ ସମୀକ୍ଷା ମଧ୍ୟ ଲେଖିଥିଲେ । ସେ ଓଡ଼ିଶାର ବିଦ୍ୱାନ ମାନଙ୍କ ସହିତ ସଂପର୍କ ରଖିଥିଲେ ଏବଂ ସମସ୍ତେ ତାଙ୍କୁ ମାମା ବୋଲି ଡାକୁଥିଲେ ।

ମୁଁ ଚିତ୍ରକଳା ଉପରେ ଗବେଷଣା କରିବା ପାଇଁ ନେହରୁ ଫେଲୋଶିପ ସଂସ୍ଥାକୁ ଯେଉଁ ଦରଖାସ୍ତ କରିଥିଲି ତାକୁ ଲେଖିବାରେ ସେ ସାହାଯ୍ୟ କରିଥିଲେ । ଏବଂ ଏ ବିଷୟରେ ଡଃ ଅନସାରୀଙ୍କ ପାଖରୁ ଫେଲୋଶିପ ସଂସ୍ଥାର ଅଧ୍ୟକ୍ଷ କରଣ ସିଂହଙ୍କ ପାଖକୁ ଏକ ଚିଠି ମଧ୍ୟ ଲେଖାଇଥିଲେ । ମୁଁ କିନ୍ତୁ ଫେଲୋଶିପ୍ ପାଇ ନ ଥିଲି । ]

Salma Lodge
Daudpur, Aligarh (U.P.)

Dear J.P.

Do not be surprised at all. This is just to assure you that MAMA is living although he has ultimately lost his loving youngest brother through cancer suffering immense pain, making me go through hell of a life. This happened in February last. It is only now that I have recovered from mental depression to think of the dear ones I left behind in Bhubaneswar.

How about your Nehru Scholarship? I am afrad it did not come to you contrary to our expectations and efforts. Well, never mind, try again this year.

Would you oblige me by sending me a copy of the Sambalpur University magazine 1971 along with 3 typed copies of my article containing in it regarding Sitabinji Murals. My own copy of the magazine 1971 was given to the stenographer through the good Mr. Mishra who has returned all the papers through my niece Zohra Begum on her way to Delhi. Well JP ring up Pat and ask him for the favour of the recovery of the magazine. I have so far no copy with me at all.

How is dear Mona. Give her my deepest love and share it with her if it is at all worthwhile. And Joshi and the rest I left behind. I am fasting these days and hope to come out unscathed after the month long ordeal. Do write to me at once about yourself. and the magazine. With love. Yours MAMA.

P.S. More after your reply. Could you find me a publisher on favourable terms?

## ଦେବ ପଟ୍ଟନାୟକ

### ୭ ନଭେମ୍ବର ୭୨ ଓ ପରବର୍ତ୍ତୀ

[ ଇଂରାଜୀ ଅଧ୍ୟାପକ ଓ କବି ଦେବ ପଟ୍ଟନାୟକ କଟକରୁ ମୋର ପାରିବାରିକ ବନ୍ଧୁ । ୧୯୫୩-୫୪ରେ ଆମେ ଏକା ସାଂଗେ ରେଭେନଶା କଲେଜରେ ଫ୍ରେଞ୍ଚ ଭାଷା ଶିଖୁଥିଲୁ । ୧୯୭୧ରେ 'ପ୍ରଥମ ପୁରୁଷ' ପ୍ରକାଶ ପାଇବା ବେଳେ ମୁଁ ଭୁବନେଶ୍ୱରରେ ରହୁଥିଲି ଏବଂ ସେ ରେଭେନଶା କଲେଜରେ ଅଧ୍ୟାପନା କରୁଥିଲେ । ସେ ଏହି ବହିଟିକୁ ଇଂରେଜୀରେ ଅନୁବାଦ କରିବା ବେଳେ ମୋ ସହିତ ଅନେକ ପତ୍ର ବିନିମୟ କରିଥିଲେ ।

ବହିଟି ଅନୁବାଦ ହେବା ପରେ ନିଶ୍ଚିତ ହୋଇଥିଲା ଯେ ସେଇଟି ପ୍ରୀତୀଶ ନନ୍ଦୀଙ୍କର ଡାଏଲଗ ପବ୍ଲିକେଶନ ପକ୍ଷରୁ ଛପା ହେବ ।

ଜୁନ ୭୩ରେ ମୁଁ ଦିଲ୍ଲୀ ଆସିଲି ଏବଂ କେତେଦିନ ପରେ ଦିଲ୍ଲୀ ବାଟ ଦେଇ ଦେବ ପଟ୍ଟନାୟକ ଆମେରିକା ଚାଲିଗଲେ । ପ୍ରୀତୀଶ ନନ୍ଦୀଙ୍କର ଡାଏଲଗ ସଂସ୍ଥା ବନ୍ଦ ହୋଇଗଲା, କିନ୍ତୁ ତାଙ୍କର ସୁପାରିଶ କ୍ରମେ 'ଫର୍ଷ୍ଟ ପର୍ସନ' ପ୍ରକାଶ ପାଇଲା ଆର୍ନଲ୍ଡ-ହାଇନେମାନ ପବ୍ଲିକେଶନରୁ, ୧୯୭୬ରେ ।

ମୋର ଠିକଣା ଜାଣି ନ ଥିବାରୁ ଜୁଲାଇ ୭୩ର ଚିଠିଟି ଦେବ ମୋ ପାଖକୁ ପଠାଇଥିଲେ ଶିଳ୍ପୀ ଯତୀନ ଦାସଙ୍କ ଠିକଣାରେ । ]

Washington D.C.
12.11.83

Respected Mr. Das,

Namaskar.

Thanks for your kind help.

I hope Mr. Som has already sent the file to Bhubaneswar. The other day I was talking to Maharishijee about you. I told that you are leaving your present job to do some thing independently. Maharishi told me to ask you if you can join our movement full time. He then asked me about your liabilities and Post etc. I told him little bit whatever I knew.

These days our movement is working on a totally different level. Due to the discovery of the Unified field of all the laws of nature by modern physics, recently, consciousness has gained a scientific recognition. Transcendental meditation is now being know as The Maharishi Technology of Unified Field. When we are teaching this technology, what we are basically doing is, we are allowing human awareness to identify with this Unified Field of all laws of Nature. The result is human thought and actions are coming to be according to laws of nature. He is not violating Laws of Nature. So he is not creating ground for sufferings. Like that if in any society or community few individuals are trained to work in harmony & laws of nature, all the negative trends are coming down. There has been enough scientific studies to support this. On this scientific basis, only Maharishi has given an offer to all Governments to solve their problems. He is now training ministers of Age of enlightenment. If you like to join at this stage of the movement

I am sure you can do something very concrete for your own personal evolution and for the society as well. But the whole thing depends on you. Its a matter of choice. I am simply giving you an information, that such a life is possible, when one can serve the society to eliminate problems and suffering and in the same stroke be enlightened.

This was just a little idea about what Maharishi is doing these days. But if you are interested for further details I will write to you later on. But I will also talk to you by phone from here.

I am sending some news letter and press cutting of U.S. newspaper.

Hope Mrs. Das and Mona are doing fine. Give my regards to them.

Dr. Mahapatra

## କୃଷ୍ଣ ଚନ୍ଦ୍ର ରାଉତ

ଦିଲ୍ଲୀ, ୧ ଜାନୁଆରୀ ୮୪

[ ୧୯୮୪ ଏପ୍ରିଲ ପହିଲା ତାରିଖରେ ମୁଁ ଓଡ଼ିଶା ସରକାରଙ୍କର ଦିଲ୍ଲୀସ୍ଥିତ ରେସିଡେଣ୍ଟ କମିଶନର ପଦରୁ ଓ ଚାକିରିରୁ ଅବସର ନେଲି । ସେହିଦିନ ଓଡ଼ିଶା ଭବନର କର୍ମୀ କୃଷ୍ଣ ଚନ୍ଦ୍ର ରାଉତ ମତେ ପଦ୍ୟରେ ଲେଖା ଏହି ବାର୍ତ୍ତାଟି ଦେଇଥିଲେ । ଆଦ୍ୟପ୍ରାନ୍ତ ବର୍ଣ୍ଣରେ ଲେଖା ଚିଠିରେ ସେ କହିଛନ୍ତି: ନବବର୍ଷ ଶୁଭେଚ୍ଛା ନେବ; ଆମକୁ ମନେ ପକାଉଥିବ । ]

ନମଇଁ ତୋ ପାଦେ ଭାରତ ମାଆ
ନବବର୍ଷେ କେ.ପି. ଶିରେ ଶୁଭବର୍ଷୁ ଥାଆ ।।
ବନ୍ଦେ ଚୌରାଅସୀ ଖ୍ରୀଷ୍ଟାବ୍ଦ ନାମ
ବଢାନ୍ତୁ ସେ ମାତୃଭୂମିର ନାମ ।।
ବହୁ ବାଧାବିଘ୍ନ ଝଡ଼ ଝଞ୍ଜାକୁ
ବଳି ଯାନ୍ତୁ ଦର୍ପେ ତୋଳି ଧ୍ୱଜାକୁ ।।
ରଚନ୍ତୁ ସ୍ୱପନ ସୁରମ୍ୟ ଧାମ
ରବିରଶ୍ମୀ ତେଜ ନୋହୁ ତୋ ସମ ।।
ଷଷ୍ଠ ମହାଦେଶ ସବୁଜ ବନେ
ଷଟ୍‌ପଦ ହୋଇ ବସି ସୁମନେ ।।
ଶୁଭ୍ର ସୌରକରୁ ଆହରି ତାପ
ଶୁଣାନ୍ତୁ ସେ ଦେଶେ ଓଡ଼ିଆ ଧାପ ।।
ଭେଦଭାବ ଯେତେ ଜାତୀୟ ଦକା
ଭେଟ ହେଲେ ତାକୁ ମାରନ୍ତୁ ଧକା ।।
ଛାର ସ୍ୱାର୍ଥେ ଚିତ୍ତ ଭ୍ରମି ନ ଯାଉ
ଛାତିରେ ଜାତିର କୀରତି ଥାଉ ।।
ନେତା, ନେତ୍ରୀ, ଦେଶ, ସୋଦର ସାଥି
ନେତ୍ର ପଥେ ତାଙ୍କ ହୁଅ ଅତିଥି ।।
ବନ୍ଧ ଛଳେ ଗୀତ ରଚନା ଲବେ
ବର୍ଣ୍ଣ ଆଦ୍ୟପ୍ରାପ୍ତ ମନେ ରଖିବେ ।।

ଆପଣଙ୍କର ଗୁଣମୁଗ୍ଧ —
ଶ୍ରୀ କୃଷ୍ଣ ଚନ୍ଦ୍ର ରାଉତ
ଓଡ଼ିଶା ଭବନ

# ହୃଷିକେଶ ମୁଖାର୍ଜୀ

ବମ୍ବେ, ୮ ମାର୍ଚ୍ଚ ୮୪

[ ବଂଧୁ ଦେବେଶ ଘୋଷ ଓ ଶକ୍ତି ସାମନ୍ତଙ୍କ ମାଧ୍ୟମରେ ମୋର ହୃଷିକେଶ ମୁଖାର୍ଜୀଙ୍କ ସହିତ ପରିଚୟ ହୋଇଥିଲା । ପରେ ମୁଁ Children's Film Society ଓ ଫିଲ୍ମ ଜୁରି ସହିତ ସଂପୃକ୍ତ ହେବା ପରେ ବିଭିନ୍ନ ଜାଗାରେ ତାଙ୍କ ସହିତ ଯୋଗାଯୋଗ ହେଉଥିଲା । ବାଙ୍ଗାଲୋରରେ ୧୯୮୫ରେ ଆନ୍ତର୍ଜାତିକ ଶିଶୁ ଚଳଚିତ୍ର ଉତ୍ସବ ବେଳେ ଆମେ ପ୍ରାୟ ପନ୍ଦର ଦିନ ଏକା ସାଙ୍ଗରେ ଥିଲୁ ।

ସେ ବୋଧହୁଏ ଫିଲ୍ମ ଜୁରି ବା କୌଣସି କମିଟି ପାଇଁ ଗୋଟିଏ ନାଁ ଚାହିଁବାରେ ମୁଁ ତାଙ୍କୁ ସୁରେନ୍ଦ୍ର ମହାନ୍ତିଙ୍କର ନାଁ ଦେଇଥିଲି । ]

March 8, 1984

My Dear J.P.,

Thank you for your letter dated February 13, 1984. I was away in West Bengal and Orissa to discuss various matters with the respective State Film Development Corporations. Hence the delay in reply.

I am thankful to you for suggesting the name of Shri Surendra Mohanty which I have already conveyed to Directorate of Film Festivals.

I also thank you for your latest book which after reading I will write to you again.

With love,

Yours

Hrishida

# ଅଭିରାମ ମହାପାତ୍ର

କଟକ, ୧୫ ଡିସେମ୍ବର ୮୪ ଓ ପରବର୍ତ୍ତୀ

[ କଟକର ପ୍ରକାଶନ ସଂସ୍ଥା 'ଗ୍ରନ୍ଥ ମନ୍ଦିର' ମୋର ଦୁଇଟି ଗଳ୍ପ ସଂକଳନ ପ୍ରକାଶ କରିଥିଲେ: ଆମେ ଯେଉଁମାନେ (୧୯୮୭) ଓ ସାକ୍ଷାତ୍‌କାର (୧୯୮୭) । ଏହାର ପ୍ରତିଷ୍ଠାତା ଶ୍ରୀଧର ମହାପାତ୍ର ମୋର ବାପାଙ୍କର ବନ୍ଧୁ ଓ ପ୍ରକାଶକ ଥିଲେ । ତାଙ୍କର ପୁଅ ଅଭିରାମଙ୍କୁ ମୁଁ ମୋର ସ୍କୁଲ ସମୟରୁ ଜାଣିଥିଲି । ବହିର ପାଣ୍ଡୁଲିପିକୁ ଟିକିନିଖି କରି ସଂଶୋଧନ କରିବାର ବଦନାମ ଥିଲା ତାଙ୍କର । 'ଆମେ ଯେଉଁମାନେ' ଓ 'ସାକ୍ଷାତ୍‌କାର' ବହି ପ୍ରକାଶ ପୂର୍ବରୁ ସେ ମୋତେ ଏଇ ଚିଠି ଦୁଇଟି ଦେଇଥିଲେ । ]

କଟକ / ୧୫.୧୨.୮୪

ଶ୍ରଦ୍ଧେୟ ଜଗନ୍ନାଥ,

ତୁମ ଚିଠିଟି ପଢି ସତରେ ବହୁତ ଆନନ୍ଦ ଲାଗିଲା । ତୁମର ଅନାବିଳ joke ହେଉଛି ସେହି ଆନନ୍ଦର କାରଣ । ଭୁଲ ସଂଶୋଧନ କରୁଛି ୨୫ ବର୍ଷ ହେଲା – ରୌପ୍ୟଜୟନ୍ତୀ ପାଳନ କରାଯାଇପାରେ ଯେହେତୁ ରୁପା ମିଳୁଛି ଓ ୨/୪ ଭରି କିଣିହେବ – ମାତ୍ର ସୁବର୍ଣ୍ଣ ଜୟନ୍ତୀ ପାଳନ କରିବାକୁ ସୁଯୋଗ ମିଳିଲେ ବି (?) ତାହା ପାଳିହେବନି – ସୁନା (କାଞ୍ଚନ) କାମିନୀମାନେ ଜରୁରି ଦରକାର କରୁଥିବାରୁ ତାହା ପୁରୁଷଙ୍କ ପାଇଁ ନିଷିଦ୍ଧ । ହଁ, ଏଇ ଭୁଲ ଦେଖାଇବା ମୁଁ ଜ୍ଞାତସାରରେ କରୁନାହିଁ – ଇନ୍ଦ୍ରିୟଗୁଡ଼ାକ ଅଭ୍ୟାସର ବଶବର୍ତ୍ତୀ ହୋଇ ଅକ୍ତିଆର ବାହାରକୁ ଚାଲିଯାଇ କୁକର୍ମ କରିଦେଉଛନ୍ତି । ତୁମ ବାପାଙ୍କ ମୁହଁରୁ ଶୁଣା ଏକ କଥା ତୁମକୁ କହୁଛି । (ତୁମେ ହୁଏତ ଶୁଣିଥିବ – ତାହା ହେଲେ କଥାଟା ପାଣିଚିଆ ଲାଗିବ) ଚନ୍ଦ୍ରମୋହନ ମହାରଣା ସ୍କୁଲ ପିଣ୍ଡାରେ ବସିଥାନ୍ତି । ଜଣେ ମୁଣ୍ଡବୋଝିଆ ସେଇ ବାଟ ଦେଇ ଡାକି ଡାକି ଗଲା 'ଚୁଡାଭଜା' 'ଚୁଡାଭଜା' । ଶ୍ରୀ ମହାରଣା ସ୍ଥିର ରହିନପାରି ଲୋକଟିକୁ ଡାକି କହିଲେ – ବାବୁ, ବ୍ୟାକରଣ ଭୁଲ ହେଉଛି – 'ଭଜାଚୁଡା' ବୋଲି କହିବ । ମୋର ହାଲଚାଲରୁ ଜାଣିବ ମୁଁ ପ୍ରାୟ ସେହି ଚନ୍ଦ୍ରମୋହନଙ୍କର ଶିଷ୍ୟ ଶ୍ରେଣୀର । ତେବେ ଏହା ସତ୍ୟ – ସାହିତ୍ୟ ସୃଷ୍ଟି ବ୍ୟାକରଣକୁ ଅପେକ୍ଷା ରଖେନା ।

ଆମର କାମ ହେଲା ଭଣ୍ଡାରିର କେଶ ପ୍ରସାଧନ ଭଳି । ଭଣ୍ଡାରିର କ୍ଷୁର ଯେ ବାବୁଙ୍କ ମୁହଁ ଖଣ୍ଡିଆ ନ କରିବ ଏ guarantee କେହି ଦିଏନି – ସବୁବେଳେ ଏ ସମ୍ଭାବନା ଥିଲେ ମଧ୍ୟ । ସେଥିପାଇଁ ବୋଧେ କହନ୍ତି – ଗାଲରେ ପାଣି ଲଗାଇ ଭଣ୍ଡାରିର କ୍ଷୁରକୁ କାହିଁକି ଡର !

ବହି କଥା – ତୁମ ପାଣ୍ଡୁଲିପିଟି ପଢ଼ିନାହିଁ – ପ୍ରେସ୍‌କୁ ଦେବା ପୂର୍ବରୁ ଥରେ ପଢ଼ିନେବି । ଅସୀମ ବସୁଙ୍କୁ ତ କହିଛି – ମୁଁ ଏଥର ତାଙ୍କର ପଶ୍ଚାତ୍‌ଧାବନ କରିବି (ଆମର ଏଠା artistମାନଙ୍କଠାରୁ ଛବିଟିଏ ଆଣିବାକୁ ହେଲେ ତୁମ ଭଳି ଲୋକଙ୍କୁ ୧୦ ଥର ଓ ଆମକୁ ୨୦ ଥର ଅନୁରୋଧ କରିବାକୁ ହେବ ।)

ମୋର ଜୋଇଁଙ୍କ ଖବର ତୁମ ଚିଠିରୁ ପାଇ ଆନନ୍ଦିତ ହେଲି । ଦିଲ୍ଲୀ ଯଦି ଯାଏ ନିଶ୍ଚୟ ତୁମକୁ ଦେଖା କରିବି ।

ଶୁଭେଚ୍ଛା ସହ —

ତୁମର

ଅଭିରାମ ମହାପାତ୍ର

ଗ୍ରନ୍ଥମନ୍ଦିର / କଟକ / ୧୮.୧୦.୮୬

ପ୍ରିୟ ଜଗନ୍ନାଥ,

ତୁମର ୧୪ ତାରିଖର ଚିଠି ପାଇଲି । editing କଥା ଲେଖିଛ । ମୁଁ ମୋ ନିଜକୁ ଜଣେ ପାଠକ ସ୍ଥାନରେ ରଖି MSକୁ ଥରେ ପଢ଼ିଥାଏ । ପରିଚିତ ପ୍ରତିଷ୍ଠିତ ଲେଖକଙ୍କ MSରେ କଣ ବା editing କରିବାର ଅଛି ? ନୂଆ କଞ୍ଚା ଲେଖକଙ୍କ ଲେଖାରେ ନିଜକୁ ପାଠକ ବିଚାରି ଯେଉଁଠି ଭଲ ନ ଲାଗେ ଟିକିଏ ହାତ ଲଗାଇଦିଏ । ତୁମେ ଖାଲି ପ୍ରତିଷ୍ଠିତ ନୁହେଁ – ଜଣେ Craftsman – ଏକଥା ତୁମ MS ପଢ଼ିବା ପରଠାରୁ ଜାଣିଛି – ତୁମର ପ୍ରକାଶିତ ଗଳ୍ପ ଆଗରୁ ଅବଶ୍ୟ ଗୋଟେ ପଢ଼ିଥିଲି, ତେବେ ତୁମ ଗଳ୍ପ ଏତେ ବେଶି ପାଠକକୁ ପ୍ରଭାବିତ କରିପାରେ ସଂକଳନର MS ପଢ଼ିବା ପରେ ସେ ଅନୁଭବ ଆସିଲା ।

ତେଣୁ କେତେକ ପଦକୁ ଯୋଡ଼ିବା ଓ ଛଡାଇବା ବ୍ୟତୀତ ବିଶେଷ କିଛି କରିନାହିଁ । ତୁମ ପାରାଗ୍ରାଫ୍ ମଧ୍ୟ compact– ଭାଙ୍ଗିବା ଦରକାର ନାହିଁ – ଅସାବଧାନ ହେଲେ ବିକୃତ ହୋଇଯିବ – ସେ ଚେତନା ମୋର ରହିଚି । ସଂକ୍ଷେପରେ – ତୁମ MSରେ କଲମ ଥୋଇବା ସାବଧାନତା ଓ ଯୁକ୍ତିଯୁକ୍ତ ବିଚାର ଦରକାର କରେ । ଠାଏ ଦି'ଠା ଭାଙ୍ଗିଚି – କେବଳ ପରପୃଷ୍ଠାକୁ କିଛି ପାଠ ନେଇ ସେ ପୃଷ୍ଠାର ଟିକିଏ ଅଧିକ ଅଂଶ cover କରିବା ଆବଶ୍ୟକତା ବିଚାରରୁ – ନଚେତ୍ ପୃଷ୍ଠାଟା ଅସୁନ୍ଦର ଦେଖାଯିବ । ବର୍ଣ୍ଣାଶୁଦ୍ଧି ସନ୍ଦେହ ଯାହା ଜଣାଇଥିଲ ସବୁ ଗୁଡ଼ିକ 'ହ୍ରସ୍ୱ ଇ' ହେବ । ତୁମେ ଜାଣ ଇନ୍ ପ୍ରତ୍ୟୟରେ (ଗୁଣ-ଇନ୍ଃ ଗୁଣୀ) ସ୍ତ୍ରୀଲିଙ୍ଗ ବାଚକ ଶବ୍ଦ (ସୁନ୍ଦରୀ, ସତୀ), ଓ ମୂଳ ସଂସ୍କୃତ ଶବ୍ଦର ଶେଷ ବର୍ଣ୍ଣ ଦୀର୍ଘ ଈ ହୋଇଥିଲେ (ତରୀ) ଓଡ଼ିଆରେ ଈ ହେବ ବା ଦୀର୍ଘ ଈ କାର ଯୁକ୍ତ ହେବ । ଶାଢ଼ି ଓ ବତିର ମୂଳ ସଂସ୍କୃତ ଲଲା ଖାଦିକା ଓ ବର୍ତ୍ତିକା । ବାବାଜି ଦେଶଜ ଶବ୍ଦ । ତେଣୁ ଏସବୁ ହ୍ରସ୍ୱ ଇ' ହେବ ଓ ଆମ ଅଭିଧାନମାନେ ସେୟା କହୁଛନ୍ତି । ଉପରୋକ୍ତ ବ୍ୟାକରଣ ନିୟମ ପ୍ରଯୁକ୍ତ ହେଉ ନ ଥିବାରୁ ବୈଦେଶିକ ଶବ୍ଦମାନଙ୍କର (ଚାକିରି, କୋଠରି ଆଦି) ଶେଷ ବର୍ଣ୍ଣ ଦୀର୍ଘ ଈ କାର କରାଯାଉନାହିଁ – ଯଦିଓ ଉଚ୍ଚାରଣ ଟିକିଏ ଦୀର୍ଘ ଭଳି ମନେହେଉଛି ।

ତୁମ ପାଖକୁ ଆଉ ବହି ପଠାଇବା ବ୍ୟବସ୍ଥା କରିବି । ଭୟ ହେଉଛି – ୧୦ ଖଣ୍ଡ ବହିର ଓଜନିଆ ପାର୍ଶଲ ଡାକରେ ଗଲେ ମାଡ ହୋଇ ବହି ନଷ୍ଟ ହେଇଯିବ – ସୌନ୍ଦର୍ଯ୍ୟ ନଷ୍ଟ ହେବ । Review ବ୍ୟବସ୍ଥା କରିବି ।

ଶୁଭେଚ୍ଛା ସହ —

ତୁମର

ଅଭିରାମ ମହାପାତ୍ର

# ଇନ୍‌ଟାକ୍

ଦିଲ୍ଲୀ, ୨ ଏପ୍ରିଲ ୮୫ ଓ ପରବର୍ତ୍ତୀ

[ ଭାରତୀୟ କଳା ଏବଂ ସାଂସ୍କୃତିକ ପରମ୍ପରାର ସଂରକ୍ଷଣ ପାଇଁ ୧୯୮୪ରେ INTACH (Indian National Trust for Art and Cultural Heritage) ସଂସ୍ଥା ଗଢ଼ା ହୋଇଥିଲା । ଏହାର ପ୍ରତିଷ୍ଠାତା ଥିଲେ ପୁପୁଲ ଜୟକର । ଏ ସଂସ୍ଥାର ଆରମ୍ଭରୁ ସେ ମୋତେ ଏଥିରେ ସଂଶ୍ଳିଷ୍ଟ କରିଥିଲେ ଓ ଓଡ଼ିଶାର ଦାୟିତ୍ୱ ଦେଇଥିଲେ ।

୧୯୯୨ରେ ବିଜୁ ପଟ୍ଟନାୟକଙ୍କ ଅନୁରୋଧରେ ପୁପୁଲ ଜୟକର ଓଡ଼ିଶାର କଳାର ଉନ୍ନତି ପାଇଁ ଏକ ବିଶେଷ 'କଳିଙ୍ଗ ପ୍ରଜେକ୍ଟ' କରିଥିଲେ । ବିଭିନ୍ନ କାରଣରୁ ଏ ଯୋଜନାର ବିଶେଷ ଅଗ୍ରଗତି ହୋଇ ନ ଥିଲା । ]

April 2, 1985

Dear Dr. Das,

It was a pleasure meeting you in INTACH office. We are grateful to you for accepting our offer to be the Convener of the Regional Chapter, Bhubaneswar.

On receipt of your confirmation, I shall forward to you a copy of the Resolution authorising each Convener of the Regional Chapter to open a bank account. You may also send to us three specimen signatures for counter-signature by us to enable you to open a bank account. You may also send to us three specimen signature for counter-signature by us to enable you to open the bank account.

With regards,

Yours sincerely,
H.S. Jassal
Coordinator, INTACH

November 1, 1991

My dear J.P.,

We have had a number of meetings in regard to your involvement in INTACH's work in Bhubaneshwar. On the basis of mutual discussion, I have pleasure in requesting you to formally associate with us, as Adviser - projects, Orissa. You have kindly agreed to work in an Honarary capacity. You will represent INTACH along with the Director of the Central Office on all Committees with the State Government including Task Force Meeting.

INTACH will pay all expenses in connection with your visits to Bhubaneshwar. In case you agree to this arrangements, please let me have a line in confirmation.

Yours sincerely

B.K. THAPAR
Secretary, INTACH

27th June, 1994

My dear J.P.,

After months of silence Kalinga Project vibes again. Funds have been released and Mapu and Rajeev forging ahead. Rajeev has done his presentation early this week and had them approved and Mapu goes acro early next month to do his.

As you may know Pyare Mohanji is now heading the Single Window and Ashok Kumar Mishra is transferred out of Culture

and Tourism and thereby O.Pji's projects have not been uplifted. – yet –

Also a cheque for Mapu's Project of Rs.1,20,000/- was not honoured and we await its revival.

Our new Secretary, Ashis Banerjee seems to have many Oriya connections and has also with Rajeev established communication with Secretary Culture, Shri S.K. Mahapatra. So now it only needs yours reinfusion into matters for the action to be full-fledged.

Phone me when you can or feel like it.

Till then,

Warm regards,

HERSHAD KUMARI SHARMA
Director General, Cultural Heritage

Mapu and Rajeev: ମାର୍ତ୍ତଣ୍ଡ ସିଂହ ଓ ରାଜୀବ ସେଠି

Pyare Mohanji: ସେତେବେଳେ ବିଜୁ ପଟ୍ଟନାୟକଙ୍କର ସେକ୍ରେଟାରୀ ପ୍ୟାରୀମୋହନ ମହାପାତ୍ର

## ମହାପାତ୍ର ନୀଳମଣି ସାହୁ

ଭୁବନେଶ୍ୱର, ୩ ଏପ୍ରିଲ ୮୫

[ ମୋର ପ୍ରିୟ ସାହିତ୍ୟିକ ବଂଧୁମାନଙ୍କ ମଧ୍ୟରୁ ମହାପାତ୍ର ନୀଳମଣି ସାହୁ ଅନ୍ୟତମ । ଏକ ସମୟରେ ସେ ମୋ ପାଖକୁ ନିୟମିତ ଚିଠି ଲେଖୁଥିଲେ ଏବଂ ସାକ୍ଷାତ ହେଲେ ଘଣ୍ଟା ଘଣ୍ଟା ଧରି ସାହିତ୍ୟ ବିଷୟରେ ଗଭୀର ଆଲୋଚନା କରୁଥିଲେ । ଥରେ ଦିଲ୍ଲୀରେ ଦେଖା ହେବା ପରେ ଭୁବନେଶ୍ୱର ଫେରିଯାଇ ସେ ଏ ଚିଠିଟି ଲେଖିଥିଲେ । ]

୩.୪.୮୫

ପ୍ରିୟ ଶ୍ରୀଯୁକ୍ତ ଜଗନ୍ନାଥବାବୁ !

କାଲି ରମାକାନ୍ତ ବାବୁ ଓ ମୁଁ ଏଠାରେ ଆସି ତିନିଟାବେଳେ ପହୁଁଚିଲୁ । ବାଟରେ ଆପଣଙ୍କ କଥା ବହୁତ ହେଲୁ । ବିଶ୍ୱାସ କରନ୍ତୁ – ମତେ ଏଥର କେବଳ ଆପଣଙ୍କ ପାଇଁ ହିଁ ଦିଲ୍ଲୀ ଖୁବ୍ ଚମତ୍କାର ଲାଗୁଥିଲା । ଆପଣ ଯଥାର୍ଥରେ କବି, ଶିଳ୍ପୀ । ଆପଣଙ୍କ ଗଳ୍ପ ଭିତରୁ ଓ ଆପଣଙ୍କୁ ସଶରୀରେ ଦେଖିଲା ଦିନୁଁ ମୁଁ ଆପଣଙ୍କ ଭିତରର ସତ୍ତା (inner being)କୁ ଦେଖିସାରିଛି ଓ ତା ସହିତ ସତକୁ ସତ ପ୍ରେମରେ ପଡିଯାଇଛି । ଆପଣଙ୍କ ସହିତ ଦିନରାତି ଆଉ କିଛି ଦିନ କଟାଇବାକୁ ଭାରୀ ଇଚ୍ଛା ହେଉଥିଲା । ଏଣିକି ମୁଁ ଆଉ ଆପଣଙ୍କୁ ଛାଡିବି ନାହିଁ – ଛାଡିପାରିବି ନାହିଁ । ଦୁଇଟି ଶିଳ୍ପୀପ୍ରାଣର ଏହି ଅନ୍ତରଙ୍ଗ ବୁଝାମଣା ଓ ପ୍ରଣୟ – ପୁଣ୍ୟରେ ହେଲେ ସମ୍ଭବ ହୋଇଥାଏ – ମୁଁ ପ୍ରକୃତରେ ମହାଭାଗ୍ୟବାନ । ଆପଣଙ୍କ ଗଳ୍ପ ବହି ଦୁଇଟି ଦେବେନ୍ଦ୍ର ବାବୁ ରଖିଛନ୍ତି । ସେ ଫେରିଲେ – ସେଗୁଡ଼ିକୁ ପଢିବି ଓ ଆପଣଙ୍କ ଗଳ୍ପ ଉପରେ ସବିଶେଷ ଲେଖିବି । ସଂରାଗର ସହିତ ଲେଖିବି ।

ଦୟାକରି ଆପଣଙ୍କ ଗଳ୍ପଗୁଡ଼ିକର ପ୍ରଥମ ଲମ୍ବା ନାମଗୁଡ଼ିକ Serially ତୁରନ୍ତ ପଠାଇବେ । ହେଳା କରିବେ ନାହିଁ ।

"ଅଭିଶପ୍ତ ଗନ୍ଧର୍ବଗୁ" ଏହି ଗଳ୍ପଟି ପଠାଇଲି । ଆପଣ ଯାହା ଉଚିତ ମନେ କରିବେ କରିବେ ।

ଶ୍ରୀମତୀ ଦାସଙ୍କୁ ମୋର ସ୍ନେହ ଶୁଭେଚ୍ଛା ଜଣାଇଦେବେ । ଆପଣ କେବେ ଓଡ଼ିଶା ଆସିବେ ?

ନମସ୍କାର ସହ । ଶୀଘ୍ର ଚିଠି ଦେବେ । ଇତି ।

ଆପଣଙ୍କର ମୁଗ୍ଧବନ୍ଧୁ

ମହାପାତ୍ର ନୀଳମଣି ସାହୁ

ରମାକାନ୍ତ ବାବୁ: କବି ରମାକାନ୍ତ ରଥ

# ଆନ୍ ୱାଲ୍‌ଡ୍‌ମ୍ୟାନ

କଲରାଡୋ, ୨୪ ଏପ୍ରିଲ ୮୫ ଓ ପରବର୍ତ୍ତୀ

[ ଆମେରିକାର କବି ଆନ୍ ୱାଲ୍‌ଡ୍‌ମାନ ଭାରତ ଆସିଥିଲେ ଭାରତୀୟ କବିଙ୍କୁ ଆମେରିକା ନେବା ବିଷୟରେ ଆଲୋଚନା କରିବା ପାଇଁ । ମୁଁ ସେତେବେଳେ 'ଫେଷ୍ଟିଭାଲ ଅଫ ଇଣ୍ଡିଆ'ର ପରାମର୍ଶଦାତା ଥିଲି । ସେତେବେଳେ ଭୋପାଳ ଭାରତ ଭବନରେ ଏକ କବିତା ପାଠ ହୋଇଥିଲା ଏବଂ ଆନ୍ ଓ ମୁଁ ସେଠାକୁ ଯାଇଥିଲୁ । ଓଡ଼ିଶାରୁ ଜୟନ୍ତ ମହାପାତ୍ର ସେଠାକୁ ଆସିଥିଲେ ଏବଂ ଆମେମାନେ ସାଙ୍ଗ ହୋଇ ସାଞ୍ଚି ଚିତ୍ର ଦେଖିବାକୁ ଯାଇଥିଲୁ ।

ଶେଷ ଚିଠିଟି ଲେଖିଥିଲେ ଇଣ୍ଟରନ୍ୟାଶନାଲ ପୋଏଟ୍ରି କମିଟିର ସଂପାଦକ କବି ବବ ରୋଜେନଥାଲ । ]

April 24, 1985

Dear JP,

I want to thank you profusely for your personal hospitality as well as the hospitality of the Festival of India. It was a great pleasure to visit India once again - really my favorite country for its beauty and pain and contradictions and spirituality - and the experiences there will remain with me a long time. I have been having dreams all week of vast foreign countries, lush vegetation, heat, dark guides, cancelled plane trips, beggar children! At any rate, it was a very rich experience for me.

I am keeping in close touch with Bob as things shape up. I spoke with Linda Closky of The Center for Contemporary Arts in Santa Fe, New Mexico, who is writing a grant proposal which will include the poets of India (probably they could accommodate 5 poets in their series). I am also discussing the possibilities with venues here in Boulder.

I hope you have decided on a better title for the anthology with Mr. Verma. MODERN POETS OF INDIA which would have a subtitle Poets of The Festival of India, or "published in conjuction with The Festival of India"? Something of this kind, I think.

I was so impressed with the Bharat Bhawan, the work with the tribal artists, and the beauty of the location. Of course the 3 day festival was a rare occasion to be steeped in the variety of your vast culture and traditions.

I am with my family to New York for 10 days for readings and lectures. I will get to work on your poems when I return.

Best wishes to you and your wife.

Sincerely yours,

Anne

ଶ୍ରୀକାନ୍ତ ବର୍ମାଙ୍କ ସଂପାଦିତ କବିତା ସଂକଳନ POETRY FESTIVAL INDIA ନାମରେ ପ୍ରକାଶ ପାଇଥିଲା

Bob, Linda: ଆମେରିକାର କବି

October 29, 1985

Dear J.P.,

It was good to hear from you! I'm glad the dates are set for New York. Now I'm trying to arrange readings in Boulder.

The Summer Writing Program went quite well; it is almost too intense (something like those 3 days in Bhopal stretched out for a month, with classes besides!). We are now planning the next year's program, where Robert Creeley will be in residence, along with Ginsberg and Burroughs.

We have a new wave of students now, although classes remain small (which I like). I'm teaching a writing workshop and a contemporary (post-modern class which actually begins with Whitman). My husband is teaching Greek Drama. Our son is doing quite well in this environment and recently turned 5 years old. I'm working on a long piece entitled IOVIS OMNIA PLENA ("All is Jove" - from Virgil) which looks at my relationship to the Male (father, brothers, husband etc. – & son – quite a challege for me).

Your address says "Delhi", but I assume you must get to Orissa as well. I remember it so fondly, and hope to return someday. How is our other poet friend there? I think of him fondly, and our visit to the rock paintings. Please send regards.

My very best wishes to you & your wife.

I will send the poems!

Sincerely,

Anne

PS: My new book SKIN MEAT BONES should be out in a month & will have a copy for you when you come to Boulder.

other poet friend: ଜୟନ୍ତ ମହାପାତ୍ର

June 5, 1985

Dear J.P.,

Please let me know what is happening from your point of view. I finally enclose photo of you, Anne and Jayanta at Sanchi. I received a letter from Ashok Vajpeyi which slightly confuses once again "the chain of command". I will see Ashok next week but like I said I would like your side of story. I short note in haste, still waiting for Verma Anthology and AIR contact.

Best Regards,

from Calcutta on the Hudson

Bob Rosenthal

## ଚିନ୍ତାମଣି ପାଣିଗ୍ରାହୀ

ଦିଲ୍ଲୀ, ୨୧ ନଭେମ୍ବର ୮୫

[ ଆମେ କଲେଜରେ ପଢିବା ବେଳେ ଚିନ୍ତାମଣି ପାଣିଗ୍ରାହୀ 'ପ୍ରଜାତନ୍ତ୍ର'ରେ କାମ କରୁଥିଲେ ଓ ଯେଉଁଠାରେ ରହୁଥିଲେ ସେ ଘରର ନାଁ ଥିଲା ଗଣେଶ କୁଟୀର । ସେ ଚୀନ ଯାଇଥିଲେ ଓ ସେଠାରୁ ଫେରିବା ପରେ ନିଜର ଗୋଟିଏ ପତ୍ରିକା ବାହାର କରୁଥିଲେ 'ଶାନ୍ତି ସମାଚାର' ନାଁରେ । ଏହି ପତ୍ରିକାର ଚତୁର୍ଥ ସଂଖ୍ୟାରେ (ମେ ୧୯୫୪) ମୁଁ ଅନୁବାଦ କରିଥିବା ଲୁ ଶୁନଙ୍କ ଗଳ୍ପ 'ମୋର ନିଜର ସେଇ ଗାଁଟି'

ପ୍ରକାଶ ପାଇଥିଲା । ଚିନ୍ତାମଣି ପାଣିଗ୍ରାହୀ ରାଜ୍ୟପାଳ ନିଯୁକ୍ତି ପାଇବା ସମୟରେ ମୁଁ ତାଙ୍କୁ ଲେଖିଥିବା ଚିଠିର ଏଇଟି ଉତ୍ତର । ]

ପ୍ରିୟ ଜଗନ୍ନାଥ ବାବୁ,

ନମସ୍ତେ । ଆପଣଙ୍କର ହାର୍ଦ୍ଦିକ ସଦିଚ୍ଛାପୂର୍ଣ୍ଣ ପତ୍ର ମୋତେ ଅତ୍ୟନ୍ତ ବିହ୍ୱଳିତ କରିଛି । ସେଥିପାଇଁ କୃତଜ୍ଞତା ଜଣାଉଛି । ପ୍ରିୟ ପ୍ରଧାନମନ୍ତ୍ରୀଙ୍କ ନିକଟରେ ମଧ୍ୟ କୃତଜ୍ଞ । ଆମେ ପରସ୍ପରକୁ ଜାଣିଥାଉଁ କଟକ ଗଣେଶ କୁଟୀର ଜୀବନଠାରୁ । ଆପଣଙ୍କୁ ଉତ୍ତର ଦେବା ମୋର ଏତେ ଡେରି ହେଲା ସେଥିପାଇଁ କ୍ଷମା ଦେବେ ।

ଆପଣଙ୍କର

ଚିନ୍ତାମଣି ପାଣିଗ୍ରାହୀ

## ଜୋସେ ମାର୍କ୍ୱେଜ

ଲିସବନ (ପର୍ତ୍ତୁଗାଲ), ୨୧ ଜାନୁୟାରୀ ୮୬

[ ୧୯୮୫ ନଭେମ୍ବର ମାସରେ ବାଙ୍ଗାଲୋରରେ ଅନ୍ତରାଷ୍ଟ୍ରୀୟ ଶିଶୁ ଚଳଚିତ୍ର ଉତ୍ସବ ହୋଇଥିଲା । ଏଥିପାଇଁ ଅନ୍ତରାଷ୍ଟ୍ରୀୟ ଶିଶୁ ଚଳଚିତ୍ର ସଂସ୍ଥା CIFEJ ପକ୍ଷରୁ ଯେଉଁ ଜୁରି ଗଠିତ ହୋଇଥିଲା, ମୁଁ ତାର ସଭାପତି ଥିଲି । ଫେଷ୍ଟିଭାଲ ସମୟରେ National Films Development Corporationର ସଭାପତି ହୃଷିକେଶ ମୁଖାର୍ଜୀ ମଧ ଆମ ସହିତ ଥିଲେ । ଏ ଭଳି ସମାରୋହରେ ଅନେକ ଭବିଷ୍ୟତ ଯୋଜନା ବିଷୟରେ ଆଲୋଚନା ହୋଇଥାଏ । ଏ ଚିଠିଟି ସେହି ସଂପର୍କୀୟ । ]

My dear friend,

Thank you much for your kind letter. It was also for me a great pleasure to work with you on the Jury CIFEJ during the Bangalore Festival.

I enclose the letter I have now written to our friend Mr. Hrishikesh Mukherjee concerning the project we talked about together, at Bangalore, of organising a Special Program about Cinema in India, during the XV International Cinema Festival of Figueira da Foz.

This first letter is of an exploratory character, being the first list I send, having specially in mind your production of the stories, but not barring out any other.

I will be grateful for any attention and support you may give to my request.

I am looking forward to hear soon from you.

Best regards

José Vieira Marques
Festival International de Cinema
Lisboa (Portugal)
21.1.1986

## ଶରତ କୁମାର ସାହୁ

ରଘୁରାଜପୁର, ୨୩ ମାର୍ଚ୍ଚ ୮୬

[ ରଘୁରାଜପୁରର ପିଲା ଶରତ କୁମାର ସାହୁ ୧୯୮୩ରେ ଲଣ୍ଡନ ଯାଇଥିଲା ସେଠାରେ ହେଉଥିବା ଭାରତୀୟ ମେଳାରେ ଯୋଗଦେବା ପାଇଁ । ସେଠାରୁ ଫେରିବା ପରେ ସେ ମୋ ସହିତ ପତ୍ର ଯୋଗେ ଯୋଗାଯୋଗ ରଖିଥିଲା । କୌଣସି ସମୟରେ ଗୁରୁ ଜଗନ୍ନାଥ ମହାପାତ୍ର ତାକୁ ବାହାର କରି ଦେଇଥିବା ସେ ମୋତେ ଜଣାଇଥିଲା ଓ ମଝିରେ ମଝିରେ ତାର ସୁଖ ଦୁଃଖ କଥା ଲେଖୁଥିଲା । ]

ରବିବାର

ତା୨୩.୩.୮୬

ମହାଶୟ,

ମୋର ଭୂମିଷ୍ଠ ପ୍ରଣାମ ନେବେ । ଆପଣଙ୍କ ଚିଠି ମୁଁ ପାଇଥିଲି । ମୁଁ ଗୁରୁଙ୍କ ଘରେ ରହି ଚିତ୍ର ଶିଖୁଛି । କିନ୍ତୁ ଘରର ପରିସ୍ଥିତି ଯାହା ଆଉ ମୋ ପକ୍ଷେ ଶିଖିବା ସମ୍ଭବ ହେଉନି ।

ମୋ ବାପା ପାରାଲେଶିଶି ରୋଗରେ ପଡ଼ିଛନ୍ତି । ତାଙ୍କର ବାମ ଗୋଡ଼ ହାତ ରହିଯାଇ ଶେ ଛୋଟେଇ ଛୋଟେଇ ଭିକ୍ଷାମାଗି ଚଳୁଛନ୍ତି । ମା ଘରେ ଘରେ ପାଣି ଦେଉଛନ୍ତି । ଏହିପରି ବହୁତ କଷ୍ଟରେ ଚଳୁଛୁ ମୋତେ ବହୁତ ଦୁଖ ଲାଗୁଛି । ଦୟାକରି ଆପଣ ମୋ ପାଇଁ ଯଦି କିଛି ସରକାରୀ ସାହାଯ୍ୟ କରାଇଦିଅନ୍ତେ, କିମ୍ୱା କୌଣସି ଚାକିରିରେ ସୁବିଧା କରାନ୍ତେ ତା ହେଲେ ଗରିବ ପିଲାଟି ବହୁତ ଉପକୃତ ହୁଅନ୍ତି । ଚିଠିପାଇ ଚିଠିଦେବେ ।

ଆପଣଙ୍କର ଆଜ୍ଞାଧିନ

ଶରତ କୁମାର ସାହୁ

## ହରିହର ମହାପାତ୍ର

କଟକ, ୯ ମେ ୮୬ ଓ ପରବର୍ତ୍ତୀ

[ ଏକ ସମୟରେ ଜଷ୍ଟିସ ହରିହର ମହାପାତ୍ର ସବୁଜ ଗୋଷ୍ଠୀର ଲେଖକ ଭାବରେ ପରିଚିତ ଥିଲେ । ପରେ ସେ ସାରା ଓଡ଼ିଶାରେ ଜଣାଶୁଣା ହେଲେ ସବୁଠାରୁ ପ୍ରସିଦ୍ଧ ସାର୍ବଜନିକ ବ୍ୟକ୍ତି ଭାବରେ । ମୁଁ ୧୯୬୮-୭୦ରେ କଟକରେ ଥିବାବେଳେ ସେ କଳାବିକାଶ କେନ୍ଦ୍ରର ସଭାପତି ଥିଲେ; ମୁଁ ଥିଲି ତାର କାର୍ଯ୍ୟକାରୀ ସଭାପତି । ପରେ ସେ 'ଝଂକାର' ପତ୍ରିକାର ସଂପାଦନା କରୁଥିଲେ ଓ ମୁଁ ମୋର ବହି Palm-leaf Miniatures ସମାଲୋଚନା ପାଇଁ ତାଙ୍କ ପାଖକୁ ପଠାଇଥିଲି । ୧୯୯୧-୯୨ରେ ମୁଁ ପ୍ରାୟେ ବର୍ଷେ କାଳ slipped disc ଯୋଗୁ ଶଯ୍ୟାଶାୟୀ ଥିଲି । ]

147

9 May, 86

My dear J.P.

I hope you are keeping well. Dr Sunil Sathapathy of Kala Vikash Kendra is going to Delhi. I have requested him to meet you and take your advice and guidance about some projects of the Kendra. I hope you will kindly spare some time for that.

With best wishes,

Yours sincerely,

H. Mahapatra

୧୯ ।୧୧ ।୯୧

ଶ୍ରଦ୍ଧାସ୍ପଦେଷୁ,

ଅକ୍ଟୋବର ୨୮ ତାରିଖର ଚିଠି ପାଇ, ବହି ଅପେକ୍ଷାରେ ରହିଥିଲି । ଦୁଇଦିନ ତଳେ ବହି 'Palmleaf Miniatures' ମିଳିଲା । Get up ବଡ଼ ସୁନ୍ଦର ହୋଇଛି । ଅନେକ ପରିଶ୍ରମ କେବଳ ସଂଗ୍ରହରେ ନୁହେଁ, ଟିପ୍ପଣୀରେ ଲାଗିଥିବା ସୁସ୍ପଷ୍ଟ ।

ଦେହ କିପରି ଅଛି ? ଏତେ ଦିନ ଅସୁସ୍ଥ ଥିବା ଦୁଃଖର କଥା । ତମପରି କଳା ଓ ସାହିତ୍ୟ କ୍ଷେତ୍ରରେ ଏକନିଷ୍ଠ ବ୍ୟକ୍ତି ଆଉ କେହି ନାହାନ୍ତି ଓଡ଼ିଶାରେ ।

ଶୁଭାର୍ଥୀ

ହରିହର ମହାପାତ୍ର

ପଢ଼ିବା ପରେ ବହି ବିଷୟରେ ଲେଖିବି ।

ହ

# ନିତ୍ୟାନନ୍ଦ ମହାପାତ୍ର

ଭୁବନେଶ୍ୱର, ୮ ଫେବୃୟାରୀ ୮୭ ଓ ପରବର୍ତ୍ତୀ

[ ନିତ୍ୟାନନ୍ଦ ମହାପାତ୍ର ମୋର ବାପାଙ୍କର ବନ୍ଧୁ ଥିଲେ । କଲେଜରେ ପଢ଼ିବା ବେଳେ ମୁଁ 'ଡଗର'ରେ ଲେଖୁଥିଲି ଓ ପିଠାପୁରରେ ଥିବା ଡଗର ଅଫିସରେ ତାଙ୍କ ସହିତ ସାକ୍ଷାତ ହେଉଥିଲା । ପରବର୍ତ୍ତୀ ସମୟରେ ଡଗର ବନ୍ଦ ହୋଇଗଲା ଓ ସେ ଆସି ଭୁବନେଶ୍ୱରରେ ରହିଲେ । ଥରେ କଲିକତାରୁ ଭୁବନେଶ୍ୱର ଆସୁଥିବା ବେଳେ ତାଙ୍କ ସହିତ ମୋର ଟ୍ରେନରେ ଭେଟ ହୋଇଥିଲା । ତା ପରେ ତାଙ୍କ ସହିତ ମଝିରେ ମଝିରେ ପତ୍ରାଳାପ ଥିଲା । ]

୮.୨.୮୭

ସ୍ନେହର ଜଗନ୍ନାଥ,

ତମ ଚିଠି ଅନେକ ଦିନୁ ପାଇଲିଣି । ନାନା କାମରେ ବ୍ୟସ୍ତ ଥିଲି । ଗାଁକୁ ଯାଇଥିଲି । ତେଣୁ ଉତ୍ତର ଦେବାରେ ଡେରି ହେଲା ।

ମୋର ଫୋନ ନମ୍ବ ହେଲା - ୫୨୫୦୯ - ଭୁବନେଶ୍ୱର ।

ତମର କୁଶଳ କାମନା କରି ରହିଲି ।

ତମ ସାଙ୍ଗରେ ଦେଖା ହେଲେ ଅନେକ କଥା କହିବି ।

ମୋତେ ତମେ ଭୁଲି ଯାଇଛ ବୋଲି ଧାରଣା ଥିଲା । ତମ ଚିଠି ପାଇ ତାହା ଦୂର ହୋଇଯାଇଛି ।

ତମର

ନିତ୍ୟାନନ୍ଦ ମହାପାତ୍ର

ସ୍ନେହର ଜଗନ୍ନାଥ,

ଆଶା ଥିଲା, ତମ ବାପାଙ୍କ ଶ୍ରାଦ୍ଧ ବେଳକୁ ଯାଇପାରିଥିଲେ ତମ ସହିତ ଭେଟ ହୋଇଥାଆନ୍ତା । ସେ ଆଶା ପୂରଣ ହେଇପାରିଲା ନାହିଁ । କେତେ ବର୍ଷ ହେବ ତମ ସାଙ୍ଗରେ ଦେଖା ହେଇନାହିଁ । ଜଗଦୀଶ ଘରେ ଥରେ ପାଞ୍ଚ ଛଅ ବର୍ଷ ଆମେ ଦେଖା ହେଇଥିଲା । ମନେ ଥିବ

ମୋ ହସ୍ତାକ୍ଷରରୁ ମୋତେ ଚିହ୍ନିପାରିବ ନାହିଁ । ଚାରିବର୍ଷ ହେବ ମୁଁ ଆଉ ହାତରେ ଲେଖିପାରୁନାହିଁ । ମୁଁ ଆଉ ଲେଖକ ଭାବରେ ବଞ୍ଚୁନାହିଁ । ତମେ ବୋଧହୁଏ ଜାଣି ନାହଁ ସେ କଥା ।

ଏତେ ବର୍ଷ ହେବ ଡଗର ବନ୍ଦ ହେବା ପରେ ପୁଣି ବାହାର କରିବାକୁ ଇଚ୍ଛା । ତମର ସାହାଯ୍ୟ ଲୋଡ଼ା ।

ତମକୁ ଆଉ ଗୋଟାଏ କଥା କହିବାର ଥିଲା । ପରେ କହିବି ।

ମୋର ସ୍ନେହ ନେବ । ଉତ୍ତର ଆଶା କରି ରହିଲ ।

ଫତୁରାନନ୍ଦଙ୍କଠାରୁ ସଂପର୍କ ଛିଡ଼ି ଯାଇଛି ପ୍ରାୟ ।

ଡଗର କଟକରୁ ନ ବାହାରି ଏଇଠୁ ବାହାରିବ ।

ତମର

ଆଶୀର୍ବାଦକ

ନିତ୍ୟାନନ୍ଦ ମହାପାତ୍ର

୨୭.୧.୮୯

ଶ୍ରାଦ୍ଧ ବେଳକୁ: ମେ ୧୯୮୮

ଜଗଦୀଶ: 'ସମାବେଶ' ସଂପାଦକ ଜଗଦୀଶ ପାଣି

# ଅମୋଲ ପାଲେକର

ବମ୍ବେ, ୮ ଏପ୍ରିଲ ୮୭ ଓ ପରବର୍ତ୍ତୀ

[ ମୁଁ ଶିଶୁ ଚିତ୍ର ସମିତିର ସଭ୍ୟ ଥିବା ବେଳେ ପ୍ରଥମେ ତାର ସଭାପତି ଥିଲେ ଅମୋଲ ପାଲେକର । ଏହି ସମିତି ପକ୍ଷରୁ ପ୍ରତି ଦୁଇବର୍ଷରେ ଥରେ ଏକ ଆନ୍ତର୍ଜାତିକ ଫିଲ୍ମ ମହୋତ୍ସବ କରାଯାଉଥିଲା । ୧୯୮୭ର ନଭେମ୍ବରର ଉତ୍ସବଟି ହୋଇଥିଲା ଭୁବନେଶ୍ୱରରେ । ]

April 8, 1987

Dear JP

Just heard of your return from U.S.A. It must have been a very successful and enjoyable trip, I am sure.

I have enclosed the copies of my letters to the officials of the Government of Orissa and would like to know your convenient dates when we could visit Bhubaneswar to finalise all the details. I personally would prefer not to be away on the weekends; but I am quite flexible as long as it is after 22nd April. Do let me know your convenience. Rest when we meet.

With fondest regards,

Yours sincerely,

Amol

November 30, 1987

My dear JP,

This is the last time that I'm writing to you as the Chairman, Children's Film Society, India.

Lots of memories, I would cherish very fondly; every moment when you respected me inspite of my being the youngest member of our team; each moment when you encouraged me to take a step that was much more firm and positive; every time we argued vehemently and managed to come closer — I wouldn't ever forget!

And then, to be in a position to look back not only with satisfaction but with immense pride, at our performance as a team – inspite of all the problems (which by now have become part of history) and to be able to make a very dignified exit — I'm sure none of us would forget the last two and a half years!!

And again, it is not very often that I find myself in a situation when I want to say so much and yet cannot !!!

Thus looking forward to continued friendship.

With fondest regards,

Sincerely

Amol

# ନଟବର ସାମନ୍ତରାୟ

ଭୁବନେଶ୍ୱର, ୯ ଜୁନ ୮୭

[ ନଟବର ସାମନ୍ତରାୟ ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ ସମାଲୋଚକମାନଙ୍କ ମଧ୍ୟରେ ଅନ୍ୟତମ । 'ଦେଶ କାଳ ପାତ୍ର' ପାଇଁ ତଥ୍ୟ ସଂଗ୍ରହ କରିବା ବେଳେ ମୁଁ ତାଙ୍କୁ ସାକ୍ଷାତ କରିବାକୁ ଯେଉଁ ଚିଠିଟି ଦେଇଥିଲି ଏଇଟି ତାର ଉତ୍ତର । ମୁଁ କିଛି ଦିନ ପରେ ତାଙ୍କ ଘରକୁ ଯାଇଥିଲି ଏବଂ ତାଙ୍କ ସହିତ ଆଲୋଚନା ମୋ ପାଇଁ ଉପାଦେୟ ଓ ସୁଖଦ ଥିଲା । ]

Bhubaneswar-2
9.6.87

ମହାଶୟ,

ଆପଣଙ୍କ ତା୩ ର ପତ୍ରଟି ଆଜି ପାଇ ଆନନ୍ଦିତ ହେଲି । କାହାରି କାହାରି ଦୟାରୁ ମୋର ସବୁ ଚିଠି ଖୋଲାଯାଏ ଓ ସେଇ ଖୋଲା ଚିଠି ମଧ୍ୟ ବିଳମ୍ବରେ ପାଏ । ଆପଣଙ୍କ ଚିଠିର ଅବସ୍ଥା ବି ସେଇଆ ।

ମୋର ଦେହର ଅସୁସ୍ଥତା ହେତୁ ମୁଁ ପ୍ରାୟ କେଉଁଆଡେ ଯାଏ ନାହିଁ । ଦେହ ଭଲ ଥିଲେ ସକାଳ ବେଳା ରାଜଧାନୀ ଆଡ଼େ ଯାଏ । ତେଣୁ ଦିନ ୪ଟା ପରେ ଆସିଲେ ଦେଖା ହୋଇପରିବ ଓ ତା' ମୋ ଜୀବନର ହେବ ଏକ ପରମ ସୌଭାଗ୍ୟ ।

ସାମନ୍ତରାପୁର ଛକ ନିକଟରେ ମୋର ଘର । ଲୁଇସ ରୋଡରେ ଆସିଲେ କେଦାରଗୌରୀ ପାର ହୋଇ ସିଧା ପୁରୀ ଆଡକୁ ଆସିବେ । M.P. ଶ୍ରୀ ଚିନ୍ତାମଣି ପାଣିଗ୍ରାହୀଙ୍କ ଘର ଡେଇଁଲେ ସାମନ୍ତରାପୁର ଛକ ପଡିବ । ସେଠି କାହାରିକୁ ପଚାରିଲେ ମୋ ଘର ଠିକଣା ପାଇପାରିବେ । ମନ୍ଦିର ଆଡୁ ପୁରୀ ରାସ୍ତାରେ ଆସିଲେ ସାମନ୍ତରାପୁର ଛକ ପଡିବ । ମୋ ଘର ସଂକେତ ୩ଟି ନଡ଼ିଆ ଗଛ — ସାମନା ପଟ ଆର୍କିଓଲୋଜିକାଲ ବଗିଚା ।

ଆଖିରେ ନ ଦେଖିଥିଲେ ହେଁ ଆପଣଙ୍କ ବିଷୟରେ ମୁଁ ବହୁକଥା ଶୁଣେ । ସାକ୍ଷାତ୍ ହୋଇପାରିଲେ ଅତ୍ୟନ୍ତ ଆନନ୍ଦିତ ହେବି ।

ମୋର ନମସ୍କାର ଗ୍ରହଣ କରିବେ । ଇତି ।

ଆପଣଙ୍କର

ନଟବର ସାମନ୍ତରାୟ

## ଜୋଆନ୍ନା ୱିଲିଆମ୍‌ସ୍

ବର୍କଲେ, କାଲିଫର୍ଣିଆ, ୧୬ ଜୁଲାଇ ୮୭

[ ବର୍କଲେ, କାଲିଫର୍ଣିଆ ବିଶ୍ୱବିଦ୍ୟାଳୟ କଳା ବିଭାଗର ପ୍ରଫେସର ଜୋଆନ୍ନା ୱିଲିଆମ୍‌ସ୍‌ଙ୍କୁ ମୁଁ ପ୍ରଥମେ ବମ୍ବେରେ ଭେଟିଥିଲି ୧୯୭୯ରେ । ମୁଁ ସେଠାକୁ ଯାଇଥିଲି ହୋମି ଭାବା ଫେଲୋଶିପ୍ ପାଇଁ ଇଣ୍ଟରଭିଉ ଦେବା ପାଇଁ ଏବଂ ଜୋଆନ୍ନା ସେଠାର ମ୍ୟୁଜିଅମ ସୋସାଇଟିରେ ଗୁପ୍ତଯୁଗର କଳା ଉପରେ ବକ୍ତୃତା ଦେଉଥିଲେ । ଏହି ସମୟରେ ସେ ଓଡ଼ିଶାର ତାଳପତ୍ର ଚିତ୍ର ଉପରେ ଗବେଷଣା ଆରମ୍ଭ କଲେ ଏବଂ ଏହି ସୂତ୍ରରେ ଆମର ଯୋଗାଯୋଗ ଅବ୍ୟାହତ ରହିଲା । ମୋର ପଟଚିତ୍ର ଗବେଷଣା କାମରେ ସେ ମୋର ମାର୍ଗଦର୍ଶକ ଥିଲେ ଏବଂ ୧୯୮୨ରେ ପ୍ରକାଶ ପାଇଥିବା Puri Paintings ବହି ମୁଁ ତାଙ୍କୁ ଉତ୍ସର୍ଗ କରିଥିଲି ।

ତା ପରେ ଆମେ ଦୁହେଁ ମିଶି ଊନବିଂଶ ଶତାବ୍ଦୀର ଓଡ଼ିଆ ତାଳପତ୍ର ଚିତ୍ରକାର ମୁଣ୍ଡମରାଇର ରଘୁନାଥ ପୃଷ୍ଟିଙ୍କ ଉପରେ ଗବେଷଣା କରିଥିଲୁ ଏବଂ ଆମ ବହି Palmleaf Miniatures: The Art of Raghunath Prusty ପ୍ରକାଶ ପାଇଥିଲା ୧୯୯୧ରେ । ଏ ଚିଠିଟି ସେହି ଗବେଷଣା କରିବା ସମୟର ଓ ସେହି ସଂପର୍କରେ । ]

July 16, 1987

My dear JP,

The enclosed prints of the Labanyavati are not nearly as good as the enlargements – but I hope they are of some use to you.

As I have been writing about the two Usabhilasas, I began to get cold feet – could they be parts of the same work that have gotten separated? The length of the Mundamarai part is only 1.5 cm. As I gathered that the same parts of the story are not repeated. What about the non R.P. handwriting?* I realize that I now have all prints, negatives, & contact sheets of these things – and you may not want to decide about this until I get them back to you in December – But if any thoughts occur to you from the xeroxes here, do let me know.

I am enoying working on this, even though the writing still needs to be polished.

I trust that Delhi is cooling off now, with some rain, and that you are now settled into pleasant reading about Orissa in the 19th century.

Yours faithfully,

Joanna

* The photos show no text for the Mundamarai ms., and I'm not clear if text & plate captions are the same there. N.B., it is not worth another trip back to Mundamarai for this, but we ought to word this carefully.

RP: ମୁଣ୍ଡମରାଇର ରଘୁନାଥ ପୃଷ୍ଟି
reading about Orissa in the 19th century: 'ଦେଶ କାଳ ପାତ୍ର' ଏହାର ପରିଣତି
ଉଷାକିରାଣ, ଲାବଣ୍ୟବତୀ: ଓଡ଼ିଆ କାବ୍ୟ

# ଜୟା ବଚ୍ଚନ

ବମ୍ବେ, ୬ ଜୁଲାଇ ୮୮

[ ଜୟା ବଚ୍ଚନଙ୍କ ସହିତ ମୋର ପ୍ରଥମ ପରିଚୟ ହୋଇଥିଲା ଆମେ ଯେତେବେଳେ ୧୯୮୫ରେ ଜାତୀୟ ଫିଲ୍ମ ପୁରସ୍କାର ଜୁରିରେ ଏକାଠି ସଭ୍ୟ ଥିଲୁ । ୧୯୮୮ରେ ସେ ଶିଶୁ ଚଳଚ୍ଚିତ୍ର ସମିତିର ଅଧ୍ୟକ୍ଷା ହେଲେ ଓ ମୁଁ ସେତେବେଳେ ତାର କାର୍ଯ୍ୟକାରୀ ସମିତିର ସଭ୍ୟ ଥିଲି । ତାଙ୍କର ଅନେକ ସମୟରେ ସୂଚନା ଓ ପ୍ରସାରଣ ମନ୍ତ୍ରାଳୟ ସହିତ ବିଭିନ୍ନ ବିଷୟରେ ତାଙ୍କର ମତଭେଦ ହେଉଥିଲା ଏବଂ ସମିତିରୁ ଆମେ ଜୟାଙ୍କୁ ସମର୍ଥନ କରୁଥିଲୁ ।

ମୁଁ ଚଳଚ୍ଚିତ୍ର ସମିତିରେ ସ୍କ୍ରିପ୍ଟ କମିଟିରେ ଥିଲି ଓ ମଝିରେ ମଝିରେ ମୋ ପାଖକୁ ସ୍କ୍ରିପ୍ଟ ଆସୁଥିଲା ମନ୍ତବ୍ୟ ପାଇଁ ।

ମୁଁ ୧୯୮୮ରେ ଆମେରିକା ଯିବା ପୂର୍ବରୁ ଏ ଚିଠିଟି ପାଇଥିଲି । ୧୯୮୯ରେ ଦିଲ୍ଲୀରେ ଯେଉଁ ଆନ୍ତର୍ଜାତିକ ଫେଷ୍ଟିଭାଲ ହୋଇଥିଲା ମୁଁ ସେଥିରେ ଜୁରି ସଭ୍ୟ ଥିଲି । ତା ପରେ ଯଦି ଓ ମୁଁ ଆଉ ଚଳଚ୍ଚିତ୍ର ସମିତିରେ ନ ଥିଲି, ୧୯୯୧ ଓ ୧୯୯୩ରେ ତିରୁବନନ୍ତପୁରମ ଓ ଉଦୟପୁରରେ ଯେଉଁ ଫେଷ୍ଟିଭାଲ ହୋଇଥିଲା, ସେଥିପାଇଁ ଜୟା ମୋତେ ନିମନ୍ତ୍ରଣ କରିଥିଲେ ।]

6th July, 1988

Dear Dr. Das,

Thank you very very much for standing by so strongly in our support.

My C.F.S.I. colleagues and I felt a lot stronger with you and your co-operation.

Have a super holiday, my best wishes to your daughter and son-in-law.

With warmest regards.

Yours sincerely,

Jaya

What did you think of the stories?

## ଆଲାନ ବ୍ରାଉନଜନ

ଲଣ୍ଡନ, ୧୫ ନଭେମ୍ବର ୮୮

[ ଅଶି ଦଶକରେ ମୁଁ ପୋଏଟ୍ରି ସୋସାଇଟି, ଇଣ୍ଡିଆର ସଭାପତି ଥିବାବେଳେ ବ୍ରିଟିଶ କାଉନସିଲ ସହାୟତାରେ ଏକ କବିତା ପ୍ରତିଯୋଗିତା ହେଉଥିଲା । ଏଥିରେ ଶ୍ରେଷ୍ଠ କବିତା ବାଛିବା ପାଇଁ ଆମ ସହିତ ଇଂଲାଣ୍ଡରୁ ଜଣେ କବି ଆସି ଯୋଗ ଦେଇଥିଲେ । ୧୯୮୮ରେ ଇଂଲିଶ କବି ଆଲାନ ବ୍ରାଉନ ଜନ ଏହି କାମ ପାଇଁ ଆସିଥିଲେ । ସେ ବର୍ଷ ବିଜୟ ନାମ୍ବିସନଙ୍କ କବିତା ବଛାଯାଇଥିଲା ।

ଆଲାନ ବ୍ରାଉନ ନିଜର କବିତା ପାଠ ବେଳେ ଗୋଟିଏ କବିତା ପଢିଥିଲେ ଯାହା ଆମର କଲୁରି ବେଷ୍ଟ କାହାଣୀ ଭଳି ଥିଲା । ମୁଁ ତାଙ୍କୁ ଓଡ଼ିଆ କଲୁରିବେଷ୍ଟ କଥାଟି ପଠାଇବା ପରେ ସେ ଏ ଚିଠିଟି ଲେଖିଥିଲେ । ପରବର୍ତ୍ତୀ ସମୟରେ ମୁଁ ମଧ୍ୟ କଲୁରିବେଷ୍ଟ ଶୀର୍ଷକ ଗୋଟିଏ କବିତା ଲେଖିଥିଲି । ]

London, 15th November 1988

Dear Mr. Das,

A brief note to thank you for so kindly sending me your translation of the Orissa folk-tale. It's very interesting to me that it has counterparts in a number of countries — the one I had come across recently was an Arabic version which an Iraqi dramatist has turned into an entire play!

I enjoyed my days in Delhi very much indeed, and am very grateful for your kindness and hospitality. I thought the judging of the Competition was a most interesting task, and the winners very impressive. I should be very pleased to meet Mr Nambisan when he makes his visit to England — and no doubt the British Council will keep me in touch with the dates.

With very best wishes,

Yours sincerely,

Alan Brownjon

## ଗୋପାଳ ଛୋଟରାୟ

କଟକ, ୩୧ ମେ ୮୯

[ ମୁଁ କଟକରେ ଥିବା ବେଳେ ନାଟକ ମାଧ୍ୟମରେ ନାଟ୍ୟକାର ଗୋପାଳ ଛୋଟରାୟଙ୍କ ସହିତ ସାମାନ୍ୟ ପରିଚୟ ଥିଲା । ପରେ ସେ ଦିଲ୍ଲୀରେ ଆସି ତାଙ୍କ ପୁଅ ଦେବଦାସଙ୍କ ପାଖରେ ଦୀର୍ଘ ସମୟ ରହିବା ବେଳେ ତାଙ୍କ ସହିତ ଅଧିକ ଯୋଗାଯୋଗ ହେଉଥିଲା । ୧୯୮୯ରେ ତାଙ୍କର 'ଶୋଭା' ନାଟକ ପଢି ମୁଁ ତାଙ୍କ ପାଖକୁ Cecil Rajendraଙ୍କର

Poetry Power ବୋଲି ଗୋଟିଏ କବିତା ପଠାଇଥିଲି ଯାହାର ବିଷୟବସ୍ତୁ ମଧ୍ୟ ତାଙ୍କର ନାଟକ ଭଳି ଥିଲା । ତା ଉତ୍ତରରେ ସେ କଟକରୁ ଏ ଚିଠିଟି ଲେଖିଥିଲେ ।]

May 31, 1989

ପ୍ରିୟ ଶ୍ରୀଯୁକ୍ତ ଦାସ,

ଆପଣଙ୍କ ଗତ ମେ ୨୬ ତାରିଖର କ୍ଷୁଦ୍ର ପତ୍ରଟି ପାଇ ଆନନ୍ଦିତ ହେଲି । Cecil Rajendraଙ୍କ କବିତାଟି ପଢିଲି । ଖୁବ୍ ଭଲ ଲାଗିଲା । ସଂପ୍ରତିକ କାଳର ଅନ୍ୟ ବହୁ କବିତା ପରି ଅବୋଧ ନୁହେଁ । ସହଜ, ସରଳ, ସୁନ୍ଦର କବିତାଟିଏ । ଆପଣଙ୍କ ପତ୍ର ଓ କବିତା ପାଇଁ ଧନ୍ୟବାଦ ।

'ଶୋଭା' ନାଟକ ପ୍ରକାଶିତ ହେବା ପରେ ଆପଣଙ୍କ ନିକଟ ଖଣ୍ଡିଏ ନାଟକ ପଠାଇବା ପାଇଁ ମୁଁ ଆଗ୍ରହୀ ଥିଲି । ମୁଁ ତ ପ୍ରାୟ କଟକରେ ରହୁଛି, ଏଠି ଆପଣଙ୍କ ଠିକଣା ପାଇ ପାରିଲି ନାହିଁ । ଦେବଦାସକୁ ମଧ ଏକଥା କହିଥିଲି । ଯାହାହେଉ, ଆପଣ ନାଟକଟି କୌଣସି ସୂତ୍ରରୁ ପାଇ ପଢିଛନ୍ତି ଜାଣି ଖୁସି ହେଲି ।

ବାସ୍ତବରେ ଶୋଭା ନାଟକର ଜନ୍ମ ଆଜିକୁ ଠିକ୍ ଚାଳିଶ ବର୍ଷ ତଳେ । ୧୯୫୦ ମସିହା ବିଷୁବ ସଂଖ୍ୟ ଝଂକାରରେ । "ମରିଛି" ନାମରେ ମୋର ଗୋଟିଏ ଗଳ୍ପ ପ୍ରକାଶିତ ହୋଇଥିଲା । ଏହା ହେଉଛି ଝଂକାରର ପ୍ରଥମ ବାର୍ଷିକ ପୂର୍ତ୍ତି ସଂଖ୍ୟା । ଏଇ 'ମରିଛି' ଗଳ୍ପର ନାୟିକା ଶୋଭା ହିଁ ହେଉଛି ମୋର 'ଶୋଭା' ନାଟକର ଶୋଭା । ଗଳ୍ପ ଓ ନାଟକ ଉଭୟର କଥାବସ୍ତୁ ପ୍ରାୟ ସମାନ । ୧୯୫୮/୫୯ ମସିହାରେ ଏ ଗଳ୍ପ ଅବଲମ୍ବନରେ ରଚିତ ମୋର ଏକ ବେତାର ନାଟ୍ୟରୂପ କଟକ ବେତାର କେନ୍ଦ୍ରରୁ ପ୍ରଚାରିତ ହେଲା ଓ ଏହାର କିଛି କାଳ ପରେ ଏଇ ବେତାର ନାଟକର ଏକ ହିନ୍ଦୀ ରୂପାନ୍ତର ପାଟନା ବେତାର କେନ୍ଦ୍ରରୁ ପ୍ରଚାରିତ ହୋଇଥିଲା । ହଁ, ଏ ବେତାର ନାଟକର ନାମ ମଧ ଥିଲା 'ଶୋଭା' । ବୋଧହୁଏ ୧୯୭୨-୭୩ ମସିହାରେ ମୁଁ ପାଟନାରେ ଥିଲା ବେଳେ ପାଟନା ବେତାର କେନ୍ଦ୍ରର କେତେଜଣ ପ୍ରୋଗ୍ରାମ ଅଫିସର 'ଶୋଭା' ବେତାର ନାଟକର ଏକ ପୂର୍ଣ୍ଣାଙ୍ଗ ମଞ୍ଚ ନାଟ୍ୟରୂପ ପ୍ରଦାନର ଚିନ୍ତା କରିବାକୁ ମତେ କଥା ପ୍ରସଙ୍ଗରେ କହିଥିଲେ । ସେଇଦିନରୁ 'ଶୋଭା'ର ମଞ୍ଚନାଟ୍ୟରୂପର କଳ୍ପ ମୋ ଭିତରେ ସଜୀବ ରହିଥିଲା ।

୧୯୭୮ରେ ପ୍ରକାଶିତ ମୋର 'ଶାଖାପ୍ରଶାଖା' ନାଟ୍ୟ ସଂଚୟନରେ 'ଶୋଭା' ଏକାଙ୍କିକା ସ୍ଥାନ ପାଇଲା ଓ ୧୯୮୧ରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଁ ପୁସ୍ତକ ନିର୍ବାଚନ ପ୍ରକ୍ରିୟାରେ 'ଶାଖାପ୍ରଶାଖା' ଅନ୍ତି ପର୍ଯ୍ୟାୟକୁ ଉନ୍ନୀତ ହୋଇଥିଲା । ସେବର୍ଷ ପ୍ରଖ୍ୟାତ କଥାକାର ସ୍ୱର୍ଗୀୟ ଅଖିଳ ମୋହନ ପଟ୍ଟନାୟକଙ୍କ 'ଓ ଅନ୍ଧଗଳି' ଗଳ୍ପ ସଂଚୟନ ପୁରସ୍କୃତ ହେଲା । (୧୯୮୨ରେ ମୋର ହାସ୍ୟରସର ନାଟକ ପାଇଁ ମୁଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କଲି) । ଏବେ 'ଶୋଭା' ପୂର୍ଣ୍ଣାଙ୍ଗ ମଞ୍ଚ ନାଟକ ପୁସ୍ତକ ଆକାରରେ ପ୍ରକାଶିତ ହେଲା । ... ଆପଣଙ୍କ ପରି ଜଣେ ସୂକ୍ଷ୍ମଦର୍ଶୀ ବିଜ୍ଞ ସାହିତ୍ୟଧର୍ମୀ କଳାକାର 'ଶୋଭା' ନାଟକ ପ୍ରତି କିଞ୍ଚିତ ଆଗ୍ରହ ପ୍ରକାଶ କରିଥିବାରୁ ଏତେଗୁଡ଼ିଏ କଥା ଲେଖିଯିବାର ଲୋଭ ସମ୍ବରଣ କରିପାରିଲି ନାହିଁ । ଆଶାକରେ ଆପଣ ଓ ମିତ୍ରାଦେବୀ ସପରିବାର ସର୍ବକୁଶଳରେ ଥିବେ ।

ଆପଣଙ୍କର ଗୁଣମୁଗ୍ଧ

ଗୋପାଳ ଛୋଟରାୟ

ପୁନଶ୍ଚ, Cecil Rajendra ତ ଏବେକାର ଯୁବଗୋଷ୍ଠିର ଲେଖକ । ତାଙ୍କର ଏଇ କବିତାଟି ପ୍ରାୟ ନିକଟ ଅତୀତରେ ଲେଖା । ଏହା ମୋ ପକ୍ଷରେ ଏକ ବିସ୍ମୟଭରା ଆନନ୍ଦ ଯେ ଏତେ ଦୀର୍ଘ କାଳର ବ୍ୟବଧାନରେ ମଧ୍ୟ ଦୁଇଜଣ ଲେଖକଙ୍କର ସମ-ଚିନ୍ତାଧାରା ଗୋଟିଏ ବିନ୍ଦୁରେ ମିଳିତ ହୋଇପାରିଛି ।

# ଏଲିଜାବେଥ ଲିସାଣ୍ଡର

## ଷ୍ଟକହମ, ୨୦ ଏପ୍ରିଲ ୯୦ ଓ ପରବର୍ତ୍ତୀ

[ ବ୍ରିଟିଶ ଫିଲ୍ମ ଇନ୍‌ଷ୍ଟିଚ୍ୟୁଟର ଶିଶୁ ଚଳଚ୍ଚିତ୍ର ବିଭାଗର ମୁଖ୍ୟ ଏଲିଜାବେଥଙ୍କ ସହିତ ମୋର ପରିଚୟ ହୋଇଥିଲା ୧୯୮୭ରେ ଭୁବନେଶ୍ୱରଠାରେ ହୋଇଥିବା ଆନ୍ତର୍ଜାତିକ ଶିଶୁ ଚଳଚିତ୍ର ସମାରୋହ ସମୟରେ । ୧୯୮୯ରେ ଆମେ ଦୁହେଁ ଦିଲ୍ଲୀଠାରେ ହୋଇଥିବା ସମାରୋହରେ ଜୁରି ସଭ୍ୟ ଥିଲୁ ।

୧୯୯୦ ମେ ମାସରେ ସ୍ୱିଡେନର ଇଣ୍ଟରନ୍ୟାଶନାଲ ଥିଏଟର ଇନ୍‌ଷ୍ଟିଚ୍ୟୁଟର ନିମନ୍ତ୍ରଣ କ୍ରମେ ସେଠାରେ ହେଉଥିବା ଥିଏଟର ବିଶ୍ୱ କଂଗ୍ରେସରେ ଯୋଗ ଦେବା ପାଇଁ ମୁଁ ଷ୍ଟକହମ ଯାଇଥିଲି । ମୁଁ ସେଠାକୁ ଯାଉଥିବାର ଖବର ପାଇଁ ଏଲିଜାବେଥ ମୋତେ ନିମନ୍ତ୍ରଣ କରିଥିଲେ ଫିନଲ୍ୟାଣ୍ଡରେ ହେଉଥିବା ଚଳଚିତ୍ର ଫେଷ୍ଟିଭାଲରେ ଯୋଗ ଦେବା ପାଇଁ, ଓ ମୁଁ ସେଠାକୁ ମଧ୍ୟ ଯାଇଥିଲି ।

ଷ୍ଟକହମରେ ଥିବା ସମୟରେ ମୁଁ ସ୍ୱିଡିଶ କବି ଓ୍ୱେର୍ନର ଆସ୍‌ପେନ୍‌ଷ୍ଟ୍ରମଙ୍କ କବିତା ଦ୍ୱାରା ପ୍ରଭାବିତ ହୋଇଥିଲି ଓ ତାକୁ ଓଡ଼ିଶାରେ ଅନୁବାଦ କରିବା ପାଇଁ ତାଙ୍କର ଅନୁମତି ନେଇଥିଲି । ବହିଟି 'ସ୍ୱପ୍ନ ବିଚାର' ନାଁରେ ୧୯୯୨ରେ ପ୍ରକାଶିତ ହୋଇଥିଲା ଓ ମୁଁ ତାକୁ ଏଲିଜାବେଥଙ୍କୁ ଉତ୍ସର୍ଗ କରିଥିଲି ।

ପ୍ରାୟ ୧୯୯୧ ବର୍ଷ ସାରା ମୁଁ ସ୍ଲିପ୍‌ଡ୍ ଡିସ୍କ ଯୋଗୁ ଅସୁସ୍ଥ ଥିଲି ।]

Dear Dr. Das

From Ms Anita Theorell of the Swedish Institute we learn that you will be in Stockholm for the ASSITEJ conference $18^{th}$-$29^{th}$ May as the guest of the Swedish Institute.

We would like to draw your attention to the fact that the Nordic Film Festival for Children and Young People will take place in Turku (Abo) in Finland during this period, from May $24^{th}$-$28^{th}$. On behalf of the Nordic Planning Group of the Festival I would like to invite you to this Festival.

Please inform the Swedish Institute as well as the Swedish Film Institute if you are interested to take part in our Nordic Children's Film Festival.

With regards,

SWEDISH FILM INSTITUTE
Elisabeth Lysander
Children's Film Coordinator

April 20, 1990

Stockholm, July 12th 1991

Dear J.P. Das,

I am sorry to hear that you are not well and hope that you will recover soon!

The address of Anita Theorell is SIDA, Cultural Department, Birger Jarlsgatan 61 105 25 Stockholm.

She might be away on a holiday - most Swedes are, at this time of the year. But on the other hand we are usually checking our mail now and then!

Best personal regards! I hope that the Aspenström book will soon be on its way.

Yours sincerely,

Elisabeth Lysander

# କ୍ୟାଥେରିନ କ୍ଲେମାଁ

## ଦିଲ୍ଲୀ, ୨୩ ଡିସେମ୍ବର ୯୦ ଓ ପରବର୍ତ୍ତୀ

[ କ୍ୟାଥେରିନ କ୍ଲେମାଁ ଫ୍ରାନ୍‌ସ୍‌ରେ ନାରୀବାଦୀ ଲେଖିକା, ଦାର୍ଶନିକ, ଚିତ୍ରକର ଓ ଐତିହାସିକ ଉପନ୍ୟାସକାର ଭାବରେ ପ୍ରସିଦ୍ଧ । ୧୯୮୪ରେ ଫ୍ରାନ୍ସରେ ଯେଉଁ ଭାରତୀୟ ମେଳା ହୋଇଥିଲା, ତାହା ଭାରତ ପକ୍ଷରୁ ଦେଖୁଥିଲେ ପୁପୁଲ ଜୟକର ଏବଂ ଫ୍ରାନ୍ସ ପକ୍ଷରୁ କ୍ୟାଥେରିନ । ଏହାର ବ୍ୟବସ୍ଥା କରିବା ପାଇଁ ସେ ପ୍ରଥମ ଥର ପାଇଁ ଭାରତ ଆସିଥିଲେ ୧୯୮୩ରେ । ମୁଁ ସେତେବେଳର ପୁପୁଲ ଜୟକରଙ୍କ Festival of India ସଂସ୍ଥାର ପରାମର୍ଶଦାତା ଥିଲି ।

୧୯୯୦ରେ କ୍ୟାଥେରିନ ପୁଣି ଦିଲ୍ଲୀକୁ ଆସି ରହିଲେ ସେତେବେଳର ଫ୍ରାନ୍ସର ରାଷ୍ଟ୍ରଦୂତଙ୍କ ସହିତ । ଏଇ ସମୟରେ ଗୋଟିଏ ଦୂତାବାସର ବନ୍ଧୁମିଳନରେ ପ୍ରକାଶକ ନରେନ୍ଦ୍ର କୁମାର ଆମକୁ ଭେଟି କହିଲେ ଯେ ଯଦି କ୍ୟାଥେରିନ ଭାରତ ବିଷୟରେ କବିତା ଲେଖନ୍ତି, ଏବଂ ମୁଁ ସେ କବିତାକୁ ଇଂରାଜୀରେ ଅନୁବାଦ କରେ ସେ ତାକୁ ପ୍ରକାଶ କରିବେ ।

୧୯୯୧ରେ ବିକାଶ ପବ୍ଲିଶିଂ ହାଉସ ପ୍ରକାଶ କଲେ ଏ ବହିଟି: Growing an Indian Star । ଏ ବହିଟି ପ୍ରକାଶ ସମୟରେ କ୍ୟାଥେରିନ ପ୍ରଥମ ଚିଠିଟି ଲେଖିଥିଲେ । ଏଇଟି ତାଙ୍କର ଏକମାତ୍ର କବିତା ବହି ।

ଗଣେଶ୍ୱର ମିଶ୍ର ସଂପାଦିତ Words on Canvas ବହିରେ କ୍ୟାଥେରିନଙ୍କର ଦୁଇଟି ଚିଠି ଦେବା ପାଇଁ ଚାହିଁବାରେ ମୁଁ କ୍ୟାଥେରିନଙ୍କୁ ଜଣାଇଥିଲି । କିନ୍ତୁ ସେ କହିଲେ ଯେ ଏଥିପାଇଁ ସେ ଆଉ ଗୋଟିଏ ନୂଆ ଚିଠି ଲେଖିଦେବେ । ସେଇଟି ତାଙ୍କର ୨୦୦୪ର ଚିଠି ।

୧୯୯୬ରେ ତାଙ୍କର ବହି Edwina and Nehru ପ୍ରକାଶ ପାଇଲା । ଏହାର ଉନ୍ମୋଚନ ଉତ୍ସବରେ ଖୁଶୱନ୍ତ ସିଂହ ସଭାପତିତ୍ୱ କରିଥିଲେ ଏବଂ କ୍ୟାଥେରିନ ଓ ମୁଁ ଏ

ବହିର କିଛି ଅଂଶ ପଢିଥିଲୁ । ଏ ବହିର ଓଡ଼ିଆ ଅନୁବାଦ ପାଇଁ ମୋ ଅନୁରୋଧରେ ଗୋଟିଏ ବିଶେଷ ମୁଖବନ୍ଧ ଲେଖିଥିଲେ । ]

New Delhi, 23 décembre 1990

Dear J.P.,

This is "the thing", which, I hope, is at last finished. Two or three points have to be noticed.

1) The verses by Yeats were checked nicely by Sudhir Kakar, including the comas.

2) I changed a little bit the idea [1]. If you still agree with it, then I will print a last page giving the final idea. Do phone please!

3) It is printed in the back of official paper because we discovered – today – that we were missing normal paper, the very day in which the embassy is closed! I hope you don't mind.

4) I have added one poem which I discovered in my booklet, titled The Bauli. Would you check it?

6) ....With all my love.

[1] Finally the traditional beginning is better. The first and the last poems will be about Kathak.

C

N.B. This address is still the good one. The phone also is good.

Yeats: ବହିର ଆରମ୍ଭରେ ୟେଟ୍‌ସ୍‌ଙ୍କ କବିତାର ଚାରି ଧାଡ଼ି ଦିଆଯାଇଥିଲା।

Pondicherry, 13th of December 2004

My dear J.P.,

Do you remember our first encounter? It was in Calcutta – in those days, it was not Kolkotha not yet, or not anymore – in September 1983, I think. I was at the head of a mission, the very first one, to elaborate the programme of the year of India in France. We did not know each other at all, and I did not know India at all.

We met just before the huge doors of the little thing which is the famous Kâli temple in Kâlighat. As VVIP, we had been posted just against the doors – closed. When they were opened, vrromff! We felt, both together, and then began the tornado - A pujari wanted money. He was very demanding. But we had been forbidden to enter with belt and bags – suspected to be in leather – and then, how can you find your rupees? The pujari shouted, we were stucked close to the Divine Mother, who was, this very day, rather Channamasti,* ready to behead us...

And she did it!

We were saved, finally, and out of the blue, completely dizzy, I said "Do you remember what Karl Marx said?" Immediately, I felt ashamed. After all, we met only half and hour ago!

But with a gentle smile, a sweet and Kâli-like smile, you answered: "Yes, I remember. Oh yes. Religion is the opinion of the people...". We laughed. And there begun a friendship

which is still going on, thanks God. I would prefer to say "Thanks Goddess". Much better if you don't believe in her.

But Kâli did a miracle, a true one. At that time, I did not speak a word of English. Nevertheless, I could say one reference, and this was the miracle, was it not?

With love and friendship,

Catherine

*Or is it Chinnamasti?

## ଲକ୍ଷ୍ମୀନାରାୟଣ ମହାନ୍ତି

ଭଦ୍ରକ, ୧୨ ମାର୍ଚ୍ଚ ୯୧

[ ଲକ୍ଷ୍ମୀନାରାୟଣ ମହାନ୍ତି ଅନୁବାଦକ ଭାବରେ ସୁପରିଚିତ । ଅନେକ ବିଦେଶୀ କ୍ଲାସିକ ବହି ସେ ଓଡ଼ିଆକୁ ଅନୁବାଦ କରିଛନ୍ତି । ମୁଲକ ରାଜ ଆନନ୍ଦ ମତେ ଗୋଟିଏ ଚିଠି ଲେଖିଥିଲେ ତାଙ୍କର Untouchable ର ଓଡ଼ିଆ ଅନୁବାଦ ପାଇଁ ତାଙ୍କୁ କୌଣସି ଟଙ୍କା ମିଳି ନ ଥିଲା ବୋଲି । ମୁଁ ତାଙ୍କ ଚିଠିଟି ଲକ୍ଷ୍ମୀନାରାୟଣ ମହାନ୍ତିଙ୍କ ପାଖକୁ ପଠାଇଥିଲି, ଏବଂ ଏଇଟି ତାର ଉତ୍ତର । ଏଥିରୁ ଲେଖକ, ଅନୁବାଦକ ଓ ପ୍ରକାଶକଙ୍କ ଅନୁଭବ ଓ ସମ୍ପର୍କ ଜଣାପଡିବ ।

ଲକ୍ଷ୍ମୀନାରାୟଣ ମହାନ୍ତିଙ୍କ ସହିତ ମୋର ଥରେ ମାତ୍ର ସାକ୍ଷାତ ହୋଇଥିଲା ସେ ସାହିତ୍ୟ ଏକାଡେମିରୁ ତାଙ୍କର ଅନୁବାଦ ପୁରସ୍କାର ନେବାକୁ ଆସିଥିବା ବେଳେ । ]

ତପୋବନ,

ଜଗନ୍ନାଥପୁର

ଭଦ୍ରକ - ୭୫୬୧୦୦ ୧୨ ମାର୍ଚ୍ଚ ୧୯୯୧

ପ୍ରୀତିଭାଜନେଷୁ,

ଚିଠି ପାଇ ସାତିଶୟ ଆନନ୍ଦ ଲଭିଲି । ମୁଲକରାଜଙ୍କ ଚିଠି ମଧ – ତେବେ ତାହାଙ୍କଠାରୁ ନିର୍ଦ୍ଦେଶ ପାଇଲେ, ଆସନ୍ତା ମାସ କଟକ ଗଲେ 'ଅଛୁବ'ର ଦ୍ୱିତୀୟ ସଂସ୍କରଣର ବ୍ୟବସ୍ଥା କରିବି । ବହିଟିର ପାରିଶ୍ରମିକ ବାବଦକୁ ଆଗରୁ ସେ ଟ୪୦୦ ଆଂଶିକ ପାଇଛନ୍ତି, ମାତ୍ର ଅନୁବାଦ ସକାଶେ ମୋତେ ଫଟା ପାହୁଲାଟିଏ ମିଳିଲା ନାହିଁ । କାରଣ ସେତେବେଳେ ମନମୋହନ ପ୍ରେସରେ କେତେକ ଉତ୍କଟ ଗଣ୍ଡଗୋଳ ହେତୁ ପରିଚାଳନାରେ ଚରମ ବିଶୃଙ୍ଖଳା ଦେଖାଦେଲା । ଫଳରେ ତାହା ଭୁଷୁଡ଼ି ପଡ଼ିଲା । ଏପରିକି ମୋର ଖଣ୍ଡିଏ ଉପନ୍ୟାସର (ନୋବେଲ ଲରିୟେଟ) ପୂର୍ଣ୍ଣାଙ୍ଗ ଅନୁବାଦର ପାଣ୍ଡୁଲିପି ମଧ ହଜିଗଲା । ତାହା ଛଡ଼ା ୫/୬ ଖଣ୍ଡ ବହିର ପ୍ରାପ୍ୟରୁ ବଞ୍ଚିତ ହେଲି । ଭାଗ୍ୟ !

ଯାହା ହେଉ, ମୁଲକରାଜ ଏକକାଳୀନ ଟ୩୦୦ ନେଲେ, ମୋର ପ୍ରାପ୍ୟରୁ ମୁଁ ତାହା ଦେଇଦେବି, ପାରିଶ୍ରମିକ ପ୍ରକାଶକଠାରୁ ମିଳିଲା ମାତ୍ରେ । ମୁଁ ତାହାଙ୍କ ବହି ପ୍ରଥମେ ଅନୁବାଦ କଲି, ଅଥଚ ସେ 'କୁଲି'ର ଅନୁବାଦ ମୋତେ ନ ଦେଇ ଅନ୍ୟ କାହାକୁ ଦେଇଦେଲେ । ହୁଏତ ସେହି ବହିଟି State Bureau of Text Book Production ଛାପିଛି । ହେଉ, ସେଥିରେ ମୋର ଦୁଃଖ ନାହିଁ । ମୁଁ ଚାହେଁ, ସେ କିଛି ମୋଟା ଟଙ୍କା ସରକାରୀ ସ୍ତରରୁ ପାଆନ୍ତୁ । ତାଙ୍କର "Two Leaves and a Bud" ବହିଟି ମୁଁ ଆଂଶିକ ଅନୁବାଦ କରି ଅନେକ ଦିନରୁ ପକାଇ ରଖିଛି । ଉପଯୁକ୍ତ ପରିଚାଳକ/ ପ୍ରକାଶକ ମିଳିଲେ, ତାହାଙ୍କ ସମ୍ମତି ନେଇ, ଅନୁବାଦ ସାରି ପ୍ରକାଶକଙ୍କୁ ଦେବି, ଏବଂ ତଦ୍ୱାରା ସେ ମଧ ନଗଦ କିଛି ପାଇଯିବେ ।

ମୋର ପଚାଶରୁ ଅଧିକ ଅନୂଦିତ ବହି ପ୍ରକାଶିତ ହୋଇଥିଲେ ହେଁ, National Book Trust ଓ Sahitya Akademi ଖଣ୍ଡିଏ ହେଲେ ବହି ଦେଉନାହାନ୍ତି । ଅବଶ୍ୟ ଅକାଦେମୀ ୧୯୬୩ରେ 'ବନଚାରୀ' (ଅନୁବାଦ ପୁରସ୍କାର ପାଇବାକୁ ଯୋଗ୍ୟ

ବିବେଚିତ) ମୋତେ ଦେଇଥିଲା ଏବଂ ମୁଁ ତାହା ଘରୋଇ ପ୍ରକାଶନ ଦ୍ୱାରା ଛପାଇ ଦେଇଥିଲି । ବହିଟି ଅନେକ ଦିନରୁ ସରି ଗଲାଣି । କିନ୍ତୁ ଅକାଦମୀ ୨ୟ ସଂସ୍କରଣ କରୁନାହିଁ । ଏବେ ପୁଣି ଅକାଦମୀକୁ ଏ ପ୍ରସଙ୍ଗରେ ଚିଠି ଦେଇଛି । ଉପରୋକ୍ତ ଉଭୟ ସଂସ୍ଥାରେ ପ୍ରୀୟା-ପ୍ରୀତି-ତୋଷଣ ସାଙ୍ଘାତିକ ଭାବରେ ଚାଲିଛି । ଆମରି ଦୋଷ ତ ସେଟା !

ତେବେ ଏହି ଦୁଇ ସଂସ୍ଥାକୁ ଅନାଇ ମୁଁ ବସି ରହିନାହିଁ । ଘରୋଇ ପ୍ରକାଶକଙ୍କ ଦ୍ୱାରା ବହିସବୁ ଛପାଇ ଦେଉଛି । ଖୁସି ନିଶ୍ଚୟ ହେବେ ଜାଣି, ଡକ୍ଟର ରାଧାକୃଷ୍ଣଙ୍କ ଧର୍ମ ପୁସ୍ତକ "East and West in Religion" ଓ "Hindu View of Life" ର ଅନୁବାଦର ଛାପା କାମ ଚାଲିଛି ।

'ଝଙ୍କାର'ରେ ଆପଣଙ୍କ ଉପନ୍ୟାସ 'ଦେଶକାଳପାତ୍ର'ର ଆଂଶିକ ଅଧ୍ୟାୟ ପଢ଼ିବାର ସୁଯୋଗଇ ପାଇ ଖୁବ୍ ଖୁସି ହେଲି । ମୋ ମତରେ, ଧାରାବାହିକ ଭାବରେ ତାହା ପ୍ରକାଶ କରାଇଦେଲେ ଉତ୍ତମ ହୁଅନ୍ତା । ଆପଣଙ୍କ ବାପା ଶ୍ରୀଧର ବାବୁ ମୋର ଘନିଷ୍ଠ ବନ୍ଧୁ ଥିଲେ । ତାଙ୍କର ସାରସ୍ୱତ ସାଧନା ବାସ୍ତବିକ ପ୍ରଶଂସାର୍ହ । ମୁଁ ବଡ଼ ଅଭାଗା, ତାଙ୍କର ଶେଷ ଦର୍ଶନ କରିପାରିଲି ନାହିଁ । ଆପଣ ତାଙ୍କର ସୁଯୋଗ୍ୟ ସନ୍ତାନ । ମୋର ଦୃଢ଼ ବିଶ୍ୱାସ, ଆପଣ ସେହି ଚିରନ୍ତନ ସାରସ୍ୱତ ପ୍ରବାହ ଅକ୍ଷୁର୍ଣ୍ଣ ରଖିବେ ।

ମୋର ଆତ୍ମଜୀବନୀ "ଥକା ମନ" ରାଉରକେଲାରୁ ପ୍ରକାଶିତ 'ନବପତ୍ର' ପତ୍ରିକାରେ ଧାରାବାହିକ ବାହାରୁଛି । ଆଗ୍ରହ ଥିଲେ, ନିମ୍ନଲିଖିତ ଠିକଣାରେ ଯୋଗାଯୋଗ କରି ପାରନ୍ତି — ରଜନୀକାନ୍ତ ଦାସ, ସମ୍ପାଦକ, ନବପତ୍ର, ଲେଖକ କର୍ମଶାଳା, ଉଦିତ ନଗର, ରାଉରକେଲା - ୭୬୯୦୧୨ । (ବାର୍ଷିକ ଚାନ୍ଦା ଟ୨୦ - ୧ମ ସଂଖ୍ୟାଠୁଁ ବାହାରୁଛି)

ପୁରସ୍କାର ଆଣିବାକୁ ଦିଲ୍ଲୀ ଗଲେ, ଆଗରୁ ଜଣାଇବି, ଅପରିଚିତ ଜାଗାରେ ମୋର ଆବଶ୍ୟକୀୟ ବ୍ୟବସ୍ଥା କରିଦେବାକୁ ଅନୁରୋଧ ।

ଠାକୁର ଆପଣଙ୍କୁ ସପରିବାର ସର୍ବ କୁଶଳରେ ରଖନ୍ତୁ । ନମସ୍କାରାନ୍ତେ । ଇତି ।

ଶୁଭାଭିଳାଷୀ,

ଲକ୍ଷ୍ମୀନାରାୟଣ

# ଦାଶରଥି ପଟ୍ଟନାୟକ

## ନୂଆ ଗାଁ, ୨୯ ଅଗଷ୍ଟ ୯୧ ଓ ପରବର୍ତ୍ତୀ

[ ଉଦୟପୁର ନୂଆ ଗାଁର ବାଞ୍ଛାନିଧି ପାଠାଗାର ଭଳି ଏହାର ପ୍ରତିଷ୍ଠାତା ଦାଶରଥି ପଟ୍ଟନାୟକ ମଧ୍ୟ ଗୋଟିଏ ଅନୁଷ୍ଠାନ ଥିଲେ । ପାଠାଗାର ଓ ମିଉଜିଅମ ପାଇଁ ବହି ଓ ସାମଗ୍ରୀ ସଂଗ୍ରହ ପାଇଁ ସେ ଗାଁ ଗାଁ ବୁଲୁଥିଲେ ଏବଂ ସାରା ଓଡ଼ିଶାରେ 'ଦାସିଆ ଅଜା' ନାଁରେ ପରିଚିତ ଥିଲେ ।

ତାଙ୍କ ସହିତ ଦେଖା ହେଲେ ସେ ସବୁବେଳେ ମତେ କହୁଥିଲେ ଯେ ମୋ ବାପା ୧୯୩୦-୩୨ରେ ବୌଦରେ ଏଜୁକେଶନ ଅଫିସର ଥିବା ବେଳେ ତାଙ୍କୁ ତାଙ୍କର ପ୍ରଥମ ଚାକିରିଟି ଦେଇଥିଲେ ।

ମୁଁ ତାଳପତ୍ର ପୋଥିଚିତ୍ର ଉପରେ ଗବେଷଣା କରିବା ସମୟରେ ଅନେକ ଥର ତାଙ୍କ ପାଠାଗାରକୁ ଯାଇଛି । ସେ ସମସ୍ତଙ୍କୁ ଅଜସ୍ର ପତ୍ର ଲେଖୁଥିଲେ । ପତ୍ର ସବୁ ପୋଷ୍ଟକାର୍ଡରେ ଆସୁଥିଲା । ବେଳେ ବେଳେ ମନିଅର୍ଡର ଫର୍ମ ତଳେ ତାଙ୍କର ଚିଠି ଆସୁଥିଲା । ସେତେବେଳେ ପୋଷ୍ଟକାର୍ଡର ଦାମ ୧୫ ପଇସା ଥିଲା । ଦାସିଆ ଅଜା ହିସାବ କରିଥିଲେ ଯେ ସେ ଯଦି ୫ ପଇସା ମନି ଅର୍ଡର କରନ୍ତି ତା ସହିତ ଡାକ ମାସୁଲ ମିଶି ୧୦ ପଇସାରେ ସେଇଟି ପ୍ରାପକ ପାଖରେ ପହଞ୍ଚିପାରିବ । ମନିଅର୍ଡର ଫର୍ମର ତଳେ ଥିବା ଛୋଟ ଜାଗାରେ ସେ ତାଙ୍କର ଚିଠି ଲେଖିପାରିବେ ।

ତାଙ୍କର ଗେରୁଆ ରଂଗର ଆଣ୍ଠୁ ଲୁଚୁ ନ ଥିବା ଲୁଗା କାନ୍ଧରେ ଗାମୁଛା ଓ ହାତରେ ଠେଙ୍ଗା ଧରି ସେ ଜଣେ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ଥିଲେ । ୧୯୮୭ରେ International Children's Film Festival ସମୟରେ ମୁଁ ଭୁବନେଶ୍ୱରର ଅଶୋକ ହୋଟେଲରେ ରହୁଥିବା ବେଳେ ସେ ମତେ ଦେଖା କରିବାକୁ ଆସିଥିଲେ ଓ ହୋଟେଲର ଲୋକ ତାଙ୍କୁ ଭିଖାରୀ ବୋଲି ଭାବି ତଡ଼ି ଦେବାକୁ ଯାଉଥିଲେ । ]

ତା୨୯ ।୮ ।୯୧

ଶ୍ରୀମାନ୍,

ଶିକ୍ଷୀ – ଜଗନ୍ନାଥ ବାବୁ – ସମସ୍ତେ ଆନନ୍ଦରେ ଥାଅ ।

କମଳାକାନ୍ତ ମହାପାତ୍ର – କଲିକତାରୁ ପତ୍ର ଦେଇଛନ୍ତି —

ତମ ବହି – ଏଠାକୁ ଜଣଙ୍କ ହାତରେ ପଠାଇଛ । ସେ ବହି ପାଇବି ।

ଯାହାଙ୍କ ହାତରେ ଦେଲ — ତାଙ୍କର ପୁରା ଠିକଣା ଦେଲ । ତାଙ୍କୁ ପତ୍ର ଦେଇ ବହି ଆଣିବାର ଚେଷ୍ଟା କରିବି ।

ଆପଣଙ୍କ ବହିକୁ ବହୁ ଗବେଷକ ଏଠି ଖୋଜୁଛନ୍ତି । ପତ୍ର ପାଇ ପତ୍ର ଦବାକୁ ଅନୁରୋଧ ।

ଏ ଗାଦିର ତମେ ଦିଅଁ । ଦି ଓଳି ପୂଜା କରୁଛୁ ।

ଅଥଚ ପତ୍ରଟିଏ ନାହିଁ ବଡ଼ ଦୁଃଖ ।

ଇତି

ତୁମ ଶୁଭଚିନ୍ତକ
ଦାଶରଥି (ଦାସିଆ)

ଆମର ପବିତ୍ର ସମ୍ପର୍କ ଅତୁଟ ରହୁ ।

ତା୧୭ ।୧୧ ।୯୧

ଆଜ୍ଞା ପ୍ରଣାମ,

ଆପଣଙ୍କ ପ୍ରେରିତ ଫର୍ମ + ଚିଠି ପାଇ ଉପକୃତ ।

ଜଣଙ୍କୁ ଦେଇଦେଲୁ ପୁରଣ ପାଇଁ (ସାନପୁଅକୁ) ।

ସେ ଦେଲେ ପଠାଇବି । ଅନୁଷ୍ଠାନ ପାଇ ଆପଣଙ୍କର କେତେ ସ୍ନେହ ଏ କାଗଜ କହିବ । ଅସୁସ୍ଥରେ ପଡିଛି । ବାତ/ମୁଣ୍ଡଭ୍ରମ/ପରିସ୍ରା ରୋଗ ।

୮୩ ପୁରିଲା — ଯିବାବେଳ ଆସିଲା । ବସା ଠିକଣା ଥାଇ ପତ୍ର ଦେବେ । ଇତି ।

ଇତି ଆ—

ଦାସିଆ

ଫର୍ମ: କେନ୍ଦ୍ର ସଂସ୍କୃତି ମନ୍ତ୍ରାଳୟକୁ ଲାଇବ୍ରେରୀ ଘର ପାଇଁ ଦରଖାସ୍ତ କରିବାର ଫର୍ମ

# ଉମେଶଚନ୍ଦ୍ର ପାଣିଗ୍ରାହୀ

ପୁରୀ, ୨୯ ମାର୍ଚ୍ଚ ୯୨

[ ଭ୍ରମଣ କାହାଣୀ ଲେଖକ ଭାବରେ ଉମେଶଚନ୍ଦ୍ର ପାଣିଗ୍ରାହୀ ଓଡ଼ିଶାରେ ଜଣାଶୁଣା । ତାଙ୍କ ସହିତ ମୋର ବିଶେଷ ପରିଚୟ ନ ଥିଲା । ୧୯୭୭ରେ ଦିଲ୍ଲୀ ଆସିବା ବେଳେ ସେ ଓ ତାଙ୍କର ଝିଅ କବି ସୁଜାତା ପ୍ରିୟଂବଦା ମତେ ଦେଖା କରିବା ପାଇଁ ଆସିଥିଲେ । ଆଉ ଥରେ ମୋର ସେମାନଙ୍କ ସହିତ ସାକ୍ଷାତ ହୋଇଥିଲା ୧୯୮୭ରେ; 'ଦେଶକାଳପାତ୍ର' ପାଇଁ ଗବେଷଣା ଉପଲକ୍ଷେ ପୁରୀ ଯାଇଥିବା ବେଳେ ମୁଁ ସେଠାରେ ତାଙ୍କ ଘରକୁ ଯାଇଥିଲି । ମୁଁ ସାହିତ୍ୟ ଏକାଡେମି ପୁରସ୍କାର ନ ନେଉଥିବା ଖବର ପାଇ ସେ ଏହି ପ୍ରୀତିପୂର୍ଣ୍ଣ ଚିଠିଟି ଲେଖିଥିଲେ । ]

୨୯.୩.୯୨

ଶ୍ରଦ୍ଧାସ୍ପଦେଷୁ,

ଆପଣ ଯେତେବେଳେ ଆଇ.ଏ.ଏସ୍. ତ୍ୟାଗ କଲେ, ସେତେବେଳେ ମୁଁ ଜାମଶେଦପୁରରେ ଥିଲି ଓ ଚିଠି ଲେଖିଥିଲି । ଏବେ ସାହିତ୍ୟ ଏକାଡେମୀ ପୁରସ୍କାର ଗ୍ରହଣ ନ କରିବା ସିଦ୍ଧାନ୍ତ ମଧ୍ୟ ମୋତେ ମୁଗ୍ଧ କରିଛି । କାରଣ ଯାହା ଥାଉ ନା କାହିଁକି, ଏ ଦୁଇଟି ସିଦ୍ଧାନ୍ତକୁ ମୁଁ ସମ୍ମାନ ଜଣାଉଛି ।

ମୁଁ ଭଗ୍ନସ୍ୱାସ୍ଥ୍ୟ ନେଇ ଏକ ପ୍ରକାର ଗୃହବନ୍ଦୀ । ଆପଣଙ୍କ ପ୍ରଥମ କାବ୍ୟଗ୍ରନ୍ଥଟିକୁ (ଯାହା ଦିଲ୍ଲୀରେ ଆପଣଙ୍କ ଘରକୁ ଯାଇଥିଲା ବେଳେ ଦେଇଥିଲେ ୧୯୭୭ରେ) ଛାଡ଼ିଦେଲେ ପରବର୍ତ୍ତୀ କୌଣସି ରଚନା ସହ ମୁଁ ପରିଚିତ ହୋଇ ପାରିଲି ନାହିଁ ।

ଆପଣଙ୍କ ସିଦ୍ଧାନ୍ତ ପ୍ରତି ମୋର ଆନ୍ତରିକ ଅଭିନନ୍ଦନ — ସୁଜାତାର ମଧ୍ୟ ।

ଶୁଭଚିନ୍ତକ

ଉମେଶଚନ୍ଦ୍ର ପାଣିଗ୍ରାହୀ

# ଅଳକା ମମତା ରେଖାରାଣୀ

ଭୁବନେଶ୍ୱର, ୨୯ ଏପ୍ରିଲ ୯୨

[ ଏଇଟି ଅନ୍ୟ ଏକ ପାଠକୀୟ ପତ୍ର । ମୁଁ ଏହାର କି ଉତ୍ତର ଦେଇଥିଲି ମନେ ନାହିଁ । ଲେଖାର ଆଭିମୁଖ୍ୟ କଣ ଏବଂ ଲେଖକ କଣ କହିବାକୁ ଚାହେଁ, ଏ ବିଷୟରେ ମୋର ମତ ହେଉଛି ଯେ ପାଠକ ସେଥିରୁ ଯାହା ବୁଝିଲା, ସେତିକି । ମୁଁ ହୁଏତ ଏହି ଭଳି ମର୍ମରେ ଉତ୍ତର ଦେଇଥିବି । କିନ୍ତୁ ମୁଁ ଯାହା ବି ଉତ୍ତର ଦେଇଥିବି, ସେଥିରେ ସେମାନେ ଆଦୌ ସନ୍ତୁଷ୍ଟ ହୋଇ ନ ଥିବେ, ଏଥିରେ ମୋର ସନ୍ଦେହ ନାହିଁ । ]

ବାଣୀବିହାର

ତା୨୯ ।୪ ।୯୨

ସମ୍ମାନସ୍ପଦ ମହାଶୟ,

ପ୍ରଣାମ ନେବେ । ବିଷୁବ ସଂଖ୍ୟା ଝଙ୍କାରରୁ ଆପଣଙ୍କ ଗଳ୍ପ 'ରାଧା' ପଢ଼ିଲୁ । ଭଲ ଲାଗିଲା, କିନ୍ତୁ ଗଳ୍ପଟିରେ ଆଭିମୁଖ୍ୟ କ'ଣ ? କ'ଣ ଆପଣ କହିବାକୁ ଚାହାଁନ୍ତି ଉକ୍ତ ଗଳ୍ପଟିରେ ଠିକ୍ ରୂପେ ବୁଝି ହେଲା ନାହିଁ । 'ରାଧା' – ନାରୀ ଚରିତ୍ରଟିର କି ସାମାଜିକ ଆବେଦନ ରହିଛି ସମାଜ ପ୍ରତି ? ସେ ଚରିତ୍ରଟିକୁ କିଭଳି ଭାବେ ବିଶ୍ଲେଷଣ କରିଛନ୍ତି ସେଥିରେ । ଦୟାକରି ଆମର ପ୍ରଶ୍ନର ଉତ୍ତର ଦେଇ ଆମକୁ ସଂଶୟମୁକ୍ତ କଲେ ଉପକୃତ ହୋଇ ପାରନ୍ତୁ ।

ଗଳ୍ପ ପଠନ ଆମର ପ୍ରିୟ ରୁଚି । ସେ ପାଇଁ ଗଳ୍ପଟିଏ ବୁଝି ନ ପାରିଲେ ଆଦୌ ଭଲ ଲାଗେନି । ଆପଣଙ୍କ ଭଳି ପ୍ରତିଷ୍ଠିତ ଗାଳ୍ପିକଙ୍କ ପାଇଁ ଏ ପ୍ରଶ୍ନ ସାଧାରଣ ହେଲେ ମଧ୍ୟ ଆମକୁ ବହୁତ ଗୁରୁତ୍ୱପୂର୍ଣ୍ଣ । ତେଣୁ ଏହାକୁ ଏଡାଇ ନ ଯିବାକୁ ଆମର ବିଶେଷ ଅନୁରୋଧ । ଇତି ।

ଆପଣଙ୍କ ବିନୟାବନତ

ଅଳକା ଦାସ (ମନସ୍ତତ୍ତ୍ୱ ବିଭାଗ)
ମମତା ରାଣୀ ବେହେରା (ଓଡ଼ିଆ ବିଭାଗ)
ରେଖାରାଣୀ ଖୁଣ୍ଟିଆ (ଇତିହାସ ବିଭାଗ)

# ଭଗବାନ ପ୍ରତିହାରୀ

ପୁରୀ, ୩ ଅକ୍ଟୋବର ୯୨

[ ମୁଁ ପଟଚିତ୍ର ବିଷୟରେ ଗବେଷଣା କରିବା ବେଳେ ନିୟମିତ ପୁରୀ ଯାଉଥିଲି ଏବଂ ସେଠାରେ ୧୯୭୯-୮୧ ଭିତରେ ବିଭିନ୍ନ ସମୟରେ ପ୍ରାୟ ଆଠମାସ କଟାଇଥିଲି । ସେତେବେଳେ ମୋ କାମ ପାଇଁ ମୁଁ ପୁରୀରେ ଯେଉଁ ସ୍ଥାନୀୟ ବାସିନ୍ଦାଙ୍କର ସାହାଯ୍ୟ ନେଉଥିଲି ସେଥିରୁ ସମାଜସେବୀ ଭଗବାନ ପ୍ରତିହାରୀ ଓ ଲେଖିକା କୁନ୍ତଳା ଆଚାର୍ଯ୍ୟ ଅନ୍ୟତମ । ଆମେମାନେ ଥରେ ଜଣେ ସେବକଙ୍କ ଘରକୁ ଯାଇଥିବା ବେଳେ ତାଙ୍କର ସ୍ତ୍ରୀ ନିଜେ ଚଉକିରେ ବସି ଆମକୁ ଛିଡ଼ା କରାଇ ଆମ ସାଙ୍ଗରେ ଅଧଘଣ୍ଟାଏ କଥାବାର୍ତ୍ତା କରିଥିବାର ମୋର ମନେ ଅଛି ।

ଭଗବାନ ପ୍ରତିହାରୀ ପରବର୍ତ୍ତୀ ସମୟରେ ମଧ୍ୟ ମୋ ସହିତ ପ୍ରୀତିପୂର୍ଣ୍ଣ ଯୋଗାଯୋଗ ରଖିଥିଲେ ।]

ତା୩ ।୧୦ ।୯୨

ପ୍ରିୟ ମହାଶୟ,

ନମସ୍ତେ, ଆପଣଙ୍କ ଲିଖିତ 'ଦେଶ, କାଳ ଓ ପାତ୍ର' ବହିଟିର ପ୍ରକାଶନାର ସମ୍ବାଦ ପାଇଥିଲି । କିନ୍ତୁ ଓଡ଼ିଶାରେ ସେ ବହିଟି କେଉଁଠାରେ ମିଳିବ, ସେ ସଂପର୍କରେ ବନ୍ଧୁ ବାନ୍ଧବଙ୍କୁ ପଚରା ଉଚରା କରିଥିଲି । ହଠାତ୍, ଆଜି ଅମୃତାୟନଟି କିଣି ଆପଣଙ୍କ ଲେଖାଟିକୁ ଆଖି ବୁଲାଇଲାବେଳେ ଦିଲ୍ଲୀ ଠିକଣାଟି ପାଇ, ଆପଣଙ୍କୁ ଏ ଚିଠିଟି ଲେଖୁଛି । କଟକରେ ସେ ବହିଟି କେଉଁଠାରେ ମିଳିବ ଓ ପୁସ୍ତକାଳୟ ପାଇଁ ଯଦି ଆପଣ କିଛି ରିହାତି ଦେଉଥାନ୍ତି, ତେବେ ଲେଖି ଜଣାଇଲେ, ବହିଟିକୁ ସଂଗ୍ରହ କରିବି । ବୋଧହୁଏ, ଆପଣଙ୍କର ମନେ ନ ଥିବ, ଆପଣ ପୁରୀ ଆସି ହରିଚଣ୍ଡି ସାହିର ଶ୍ରୀ ପଟଯୋଶୀ ମହାପାତ୍ରଙ୍କ ଘରକୁ ଯାଇ 'ଛାମୁ ଚିଟାଉ'ର ନକଲ ଖୋଜିବା ପାଇଁ ମୁଁ ଓ ଶ୍ରୀମତୀ କୁନ୍ତଳା ଆଚାର୍ଯ୍ୟ ଆପଣଙ୍କ ସଙ୍ଗେ ଯାଇଥିଲୁ । ସେଥିପାଇଁ ଆମେ ବହିଟି ଦେଖିବା ପାଇଁ ବ୍ୟସ୍ତ । ଯଦି କେବେ ପୁରୀ ଆସନ୍ତି, ଆଗରୁ ଖବର ଦେବେ । ଶ୍ରୀମତୀ ଆଚାର୍ଯ୍ୟଙ୍କଠାରୁ ଶୁଣିଥିଲି ଯେ, ଆପଣ ନିକଟରେ କଟକ ଆସିଥିଲେ ଏବଂ ତାଙ୍କ ସହ ଦେଖା ହୋଇଥିଲା । ଆଶା, ଆପଣ ସପରିବାରେ ଭଲରେ ଥିବେ । ଆଉ ସବୁ ସାକ୍ଷାତରେ ।

ଆପଣଙ୍କର

ଭଗବାନ ପ୍ରତିହାରୀ

ତା୨୦ ।୪ ।୯୪

ପ୍ରିୟ ମହାଶୟ,

ନମସ୍ତେ, ବହୁତ ଦିନ ହେଲା ଆପଣଙ୍କଠାରୁ କୌଣସି ଖବର ନ ପାଇ ଚିନ୍ତିତ । ମୋର ମଧ ଗତମାସରେ ଦିଲ୍ଲୀ ଯିବାର ଥିଲା । କିନ୍ତୁ ଶରୀର ଅସୁସ୍ଥ ଯୋଗୁଁ ଯାଇପାରିଲି ନାହିଁ । ଆସନ୍ତା ମାସକୁ ମୋର ଜଣେ ବନ୍ଧୁ ଦିଲ୍ଲୀ ଯିବେ । ତାଙ୍କ ହାତରେ ଆପଣଙ୍କ ଲିଖିତ 'ORISSA ARTS' ବହିଟି କିଣିଆଣିବି । ଗୋଟିଏ ବିଷୟ ନେଇ ଆମ ବନ୍ଧୁମାନଙ୍କ ଭିତରେ ବଡ଼ ବାଡ଼ିଆପିଟା ଲାଗିଛି । ଜଣେ କହନ୍ତି, ଆପଣଙ୍କ ଘର କଟକ

ଜିଲ୍ଲାରେ, ଆଉ ଜଣେ ଜୋର୍ ଦେଇ କହନ୍ତି, ଆପଣଙ୍କ ଘର ପୁରୀ ଜିଲ୍ଲା କାକଟପୁର ଥାନାର ନଈଗୁଆଁରେ । ଦୟାକରି ଆପଣ ଏ ବିଷୟରେ ଲେଖି ପଠାଇଲେ, ଆମ ଗଣ୍ଡଗୋଳ ତୁଟିଯିବ । ଆପଣଙ୍କ ଶ୍ୱଶୁରଘର ମଧ୍ୟ ପୁରୀ ଜିଲ୍ଲାରେ ଅଟେ ବୋଲି ଜଣେ କହନ୍ତି । ଆଉ ନୂଆ ବହି କ'ଣ ଲେଖିଲେଣି । ମୋର ଶରୀର ଭଲ ରହୁନଥିବାରୁ କେଉଁଆଡ଼କୁ ଯାଇପାରୁନାହିଁ ।

ଆଶା, ଶ୍ରୀଜଗନ୍ନାଥଙ୍କ କୃପାରୁ ସପରିବାରେ କୁଶଳରେ ଥିବେ ।

ଆପଣଙ୍କର

ଭଗବାନ ପ୍ରତିହାରୀ

ତା୩୦ ।୪ ।୯୪

ପ୍ରିୟ ମହାଶୟ,

ନମସ୍ତେ, ଆପଣଙ୍କ ପତ୍ର ଯୋଗୁଁ ଧନ୍ୟବାଦ । କାକଟପୁର ବନ୍ଧୁ ଜିତିଗଲେ । ମୁଁ ହାରିଗଲି । ତେବେ ପୁରୀବାଲା ଗାଲୁରେ ଅଭ୍ୟସ୍ତ । ମୁଁ ତାଙ୍କୁ ସହଜେ ଛାଡ଼ିଦେବି ନାହିଁ । ସାଧୁ ସୁନ୍ଦର ଦାସଙ୍କ ସଂପର୍କରେ ଆଗରୁ ଲେଖାପଢ଼ିଛି । ଆପଣଙ୍କ ଲିଖିତ ବହିଟି ଭୁବନେଶ୍ୱରରୁ ମଗାଇ ପଢ଼ିବି । ମୁଁ ଅତ୍ୟନ୍ତ ଲଜ୍ଜିତ ଯେ, ଆପଣଙ୍କୁ ପ୍ରତିଶ୍ରୁତି ଅନୁଯାୟି 'ଛାମୁ ଚିଟାଉ'ରୁ ନକଲ ପଠାଇପାରିନାହିଁ । ଏହି 'ଛାମୁ ଚିଟାଉ' ପାଇଁ ଭଦ୍ରଲୋକଙ୍କ ଘରକୁ ଯିବା ଆସିବା କରିବାରେ ରିକ୍ସାଭଡ଼ା ଖର୍ଚ୍ଚ ୧୫/୨୦ ଟଙ୍କା ହେଲାଣି । ତେବେ ସୁଦ୍ଧା ଯାହାଙ୍କ ପାଖେ ଲେଖା ଅଛି, ସେ ଗୁରୁତ୍ୱ ବୁଝୁନାହାନ୍ତି । ତେବେ ଉଦ୍ୟମ ଅବ୍ୟାହତ ରଖିଛି । ଖରାଦିନ ପରେ ଦିଲ୍ଲୀ ଯିବାର ଇଚ୍ଛା ଅଛି । ଦେହ ଭଲ ରହୁ ନ ଥିବାରୁ ଯିବାକୁ ସାହାସ କରୁନାହିଁ ।

ଆଶା ସପରିବାରେ ଭଲରେ ଥିବେ । ଇତି ।

ଆପଣଙ୍କର

ଭଗବାନ ପ୍ରତିହାରୀ

# ଧ୍ରୁବଚରଣ ପାଇକରାୟ

## ଖୋର୍ଦ୍ଧା, ୧୪ ଡିସେମ୍ବର ୯୨

[ ମୋର 'ଦେଶ କାଳ ପାତ୍ର' ବହି ପ୍ରକାଶ ପରେ ମୁଁ ମଝିରେ ମଝିରେ ପତ୍ର ପାଉଥିଲି ସେଥିରେ ଥିବା କୌଣସି ବିଷୟରେ ସନ୍ଦେହ ମୋଚନ ପାଇଁ ଅଥବା ସେମାନେ ଭାବୁଥିବା ଭୁଲ ଭ୍ରାନ୍ତି ଦର୍ଶାଇ । ଯଥା: କେନ୍ଦୁଝର ଜୁନ ୧୯୮୧ ପରିଚ୍ଛେଦ ୪୭୬ ପୃଷ୍ଠାରେ ମେଳିଆ ଧରଣୀଧର ଡେପୁଟି କମିଶନର ଡସନଙ୍କୁ ହାତୀ ଉପରେ ବସି ଭେଟିବାକୁ ଯାଉଥିବାର ଉଲ୍ଲେଖ ଅଛି, ଫକୀରମୋହନ ଘୋଡ଼ା ବୋଲି ଲେଖିଛନ୍ତି; କେଉଁଟି ଠିକ ? (ମୋର ଉତ୍ତର: ସେତେବେଳର ଦଲିଲ ଅନୁସାରେ ଜନ୍ତୁଟି ହାତୀ ।) ଆଉ ଜଣେ ପଚାରିଥିଲେ ଆପଣ କଣ ବହିରେ ଥିବା ବିଚିତ୍ରାନନ୍ଦ ଦାସଙ୍କର ବଂଶଧର ? (ଉତ୍ତର: ନା) ।

ଦେଶକାଳପାତ୍ରରେ ଥିବା ବିଷୟ ସବୁ ଇଂରେଜୀ କାଗଜପତ୍ରରୁ ନିଆଯାଇଥିଲା ଏବଂ ସେଥିରେ ଅଧିକାଂଶ ଜାଗା ଓ ଲୋକମାନଙ୍କର ନାଁ ଅଦଭୁତ ବନାନରେ ଲେଖାଯାଉଥିଲା । (ମିଠାକୂଅ = Meetacooah) । ସେଥିପାଇଁ ଏହି ଚିଠିରେ ଲେଖାଥିବା ସମସ୍ୟା । ଦେଶକାଳପାତ୍ରର ଦ୍ୱିତୀୟ ସଂସ୍କରଣରେ ମୁଁ ଛଣଗିରିକୁ ଛଣଘର କରି ଦେଇଥିଲି ।]

Dt. 14.12.92

ପ୍ରିୟ ମହାଶୟ,

ନମସ୍କାର ଗ୍ରହଣ କରିବେ । ପ୍ରଭୁ ଜଗନ୍ନାଥଙ୍କ କୃପାରୁ ଏହି ପରି ଐତିହାସିକ ତଥ୍ୟ ସମ୍ବଳିତ ଲେଖା ପ୍ରକାଶ ପଥରେ ଆଗେଇ ଚାଲନ୍ତୁ । ମୋର ଗୋଟିଏ କଥା ସଂଦେହ ହେବାରୁ ତାହା ଲେଖୁଅଛି । ଖଣ୍ଡି ଉପାଖ୍ୟାନ । ପୁରୀ ଡିସେମ୍ବର ୧୯୦୦, ପୃଷ୍ଠା - ୫୭୬ "ଦେଶ କାଳ ପାତ୍ର" । କୁଦିଆରୀ-କୁସୁମାଟି ଓ ଛଣଗିରି ତିନି ମୌଜା ଖଣ୍ଡିକୁ

ଦେଲେ । ତାହା "ଛଣଗିରି" ନା "ଛଣଘର" । କାରଣ କୁସୁମାଟି ଛଣଘର ଓ କୁଦିଆରି ଲଗାଲଗି ଗ୍ରାମ । କିନ୍ତୁ ଛଣଗିରି ସେଠାରୁ ୩୦ K.M.

ଏହା ମୋର ଆନ୍ତରିକ ବିନମ୍ର ନିବେଦନ । ଦୋଷାଦୋଷ କ୍ଷମା କରିବେ ।

ଆପଣଙ୍କର

ସ୍ନେହର

ଧ୍ରୁବ

## ଭୁବନେଶ୍ୱର ବେହେରା

୧୧ ଜୁଲାଇ ୯୩

[ ପ୍ରଫେସର ଭୁବନେଶ୍ୱର ବେହେରା ସମ୍ବଲପୁର ବିଶ୍ୱବିଦ୍ୟାଳୟ କୁଳପତି ଥିବା ବେଳେ ସେଠାରୁ 'ସପ୍ତର୍ଷି' ନାମକ ଏକ ସାହିତ୍ୟ ପତ୍ରିକା ପ୍ରକାଶ କରୁଥିଲେ । ସେହି ସୂତ୍ରରେ ମୋର ତାଙ୍କ ସହିତ ପରିଚୟ ହୋଇଥିଲା । ସତୁରୀ ଦଶକ ପ୍ରଥମ ଭାଗରେ ସେ ଦିଲ୍ଲୀକୁ ଆସିଲେ ପବ୍ଲିକ ସର୍ଭିସ୍ କମିଶନ୍‌ର ସଭ୍ୟ ହୋଇ । ସେତେବେଳେ ତାଙ୍କ ସହିତ ସଂପର୍କ ଆହୁରି ବଢିଲା ।

'ଦେଶ କାଳ ପାତ୍ର' ବହିଟି ପଢି ସେ ଏ ଚିଠିଟି ଲେଖିଥିଲେ । ]

ପ୍ରିୟ ଡ. ଦାସ,

'ଦେଶ କାଳ ପାତ୍ର' ପଢିଲି । ବହୁତ ଭଲ ଲାଗିଲା । ନୂଆ ଢଙ୍ଗର ଲେଖା – ଶିକ୍ଷଣୀୟ ବିଷୟ ଏତେ ଅଛି ଯେ ପଢିଲା ବେଳେ ଛାଡ଼ି ହୁଏନି । ତଥ୍ୟ ସବୁ ଏତେ ଖୁନ୍ଦି ହୋଇଛି ଯେ କେବେ କେବେ କାହାଣୀ ଆଗଉନି ପରି ମନେହୁଏ – କିନ୍ତୁ କ୍ଷଣିକ ପାଇଁ । ଏପରି ଐତିହାସିକ ବିଷୟବସ୍ତୁର ଉପନ୍ୟାସ ସେପରି ହେବା ସ୍ୱାଭାବିକ । ଯେଉଁମାନେ କାହାଣୀର ଅଗ୍ରଗତିକୁ ଧରି ବସନ୍ତି ସେମାନେ ହୁଏତ ଭିନ୍ନ କଥା କହିବେ

ମୋତେ କିନ୍ତୁ ଏତେ ଭଲ ଲାଗିଲା ଯେ ଆଖିର ଅବସ୍ଥା ଯେଉଁ ଭଲକରି ପଢ଼ିବାରେ କଷ୍ଟ ହେଉଥିଲେ ମଧ୍ୟ ବହିଟି ଶୀଘ୍ର ସରି ଯାଇଛି ପରି ମନେ ହେଲା । ମୋର ଆଶା ଦ୍ୱିତୀୟ ଭାଗ ପ୍ରକାଶ ପାଇବ ମୋର ପୂର୍ଣ୍ଣ ବିଶ୍ୱାସ ଏ ବହି ଗବେଷକଙ୍କ ପାଇଁ ଅନେକ ଖୋରାକ ଯୋଗାଇବ । ଏମିତି ଏକ ଚମତ୍କାର ବହି ଓଡ଼ିଆ ସାହିତ୍ୟକୁ ଦାନ କରିଥିବା ଯୋଗୁଁ ମୋର ବଧାଇ ନେବେ ।

ଶୁଭେଚ୍ଛା ସହ

ଭୁବନେଶ୍ୱର ବେହେରା

୧୧.୭.୯୩

# କିଶୋରୀ ଚରଣ ଦାସ

କଟକ, ୧୩ ଜୁଲାଇ ୯୩

[ ବିଶିଷ୍ଟ କଥାକାର କିଶୋରୀ ଚରଣ ଦାସଙ୍କ ସହିତ ମୋର ପ୍ରକୃତ ସଂପର୍କ ହେଲା ୧୯୭୩ରେ ଦିଲ୍ଲୀରେ । ଆମେ ପରସ୍ପରକୁ ଇଂରେଜୀରେ ଚିଠି ଲେଖୁଥିଲୁ । ସେ ଚିଠିପତ୍ର ଲେଖିବାରେ ନିୟମିତ ଥିଲେ ଏବଂ ପ୍ରତ୍ୟେକ ଚିଠିରେ ତାଙ୍କ ନିଜର ଲେଖା ବିଷୟରେ ଏବଂ ବହିର ପ୍ରକାଶନ ବିଷୟରେ ବିସ୍ତାର ରୂପେ ଲେଖୁଥିଲେ ।

ଆମେ ଦୁହେଁ ଇଂରେଜୀରେ "Oriya Writing Today" ନାମରେ ଏକ ସଂକଳନ ପ୍ରକାଶ କରିବା ପାଇଁ ଚେଷ୍ଟା କରିଥିଲୁ । ପ୍ରାୟ ଦଶବର୍ଷ ବିଭିନ୍ନ ପ୍ରକାଶକଙ୍କ ପାଖକୁ ଦଉଡ଼ିବା ପରେ ଆମର ଅନେକ ଶ୍ରମ ସତ୍ତ୍ୱେ ବହିଟି ପ୍ରକାଶ ପାଇ ପାରି ନ ଥିଲା । ଶେଷ ଜୀବନରେ ତାଙ୍କର ଏଇଟି ଏକ ବିଶେଷ ଦୁଃଖ ଥିଲା । ]

13 July, 93

Dear J.P.,

Thanks for your letter. I suppose you have also received my letter by this time, in which I have written about the publication of my new English Collection "The Midnight Moon and Other Stories". As I had mentioned there, I'll welcome your comments on the book, when you receive a copy from the publishers — B.R. Publishing Corporation, Delhi.

Regarding "Oriya Writing Today". I am glad to inform you that Prof. Jain has categorically expressed his willingness on behalf of his newly-established "Pencraft International", to publish the book. So it is now for us to get going and hand over the material to him as soon as we can, after settling the relevant details. Meanwhile I have also written to K.K. Mohapatra seeking his help in making the revived project a success. It is also very necessary for both of us to meet on the subject, after you have a session with Prof. Jain. So please make it a point to contact me when you are next in Orissa. We can meet at Cuttack or Bhubaneswar, as may be mutually convenient.

Your book 'ଦେଶ କାଳ ପାତ୍ର' has created quite a controversy in the literary circles of Orissa. You have desecrated our gods, say some of our luminaries! Will talk more about it when we meet in person.

By the way, do you happen to know the present address of Ms Yasodhara Misra and her husband Satyanand Babu? Please let me know.

More later.

With best wishes to you & Mitra.

Yours sincerely

K.C. Das

## ଗୁଲଜାର

ବମ୍ବେ, ୨୦ ଅଗଷ୍ଟ ୯୩ ଓ ପରବର୍ତ୍ତୀ

[ ବମ୍ବେ ଫିଲ୍ମ ଜଗତର ଜଣାଶୁଣା ଗୁଲଜାରଙ୍କ ସହିତ ମୋର ପରିଚୟ ହୁଏ ଅଶି ଦଶକରେ ଯେତେବେଳେ ଆମେ ଦୁହେଁ Children's Film Society (CFSI) କାର୍ଯ୍ୟକାରୀ ସମିତିର ସଭ୍ୟ ଥିଲୁ । ସୋସାଇଟିର ସଭା ବାହାରେ ଆମେ କବିତା ଆଲୋଚନା କରି ସମୟ କଟାଉଥିଲୁ ଏବଂ ପରସ୍ପର ସହିତ କବିତା ବିନିମୟ କରୁଥିଲୁ । ତାଙ୍କ ସହିତ ମିଶି ତାଙ୍କର କବିତାର ଅନୁବାଦ କରିବା ଏକ ପ୍ରୀତିକର ଅନୁଭବ ଥିଲା; ଏ କବିତାମାନ ୧୯୯୯ରେ Autumn Moon ବହି ହୋଇ ପ୍ରକାଶ ପାଇଥିଲା । ]

20.8.93

My Dear J.P. Da',

I just returned from Bhopal, and found your book in front of me. It's always a pleasure to meet you in person or by post. I will write to you after going through the book. CFSI's one big contribution is that it has given me a friend like you.

I am sending you a few more poems, translated by Rina. I will be happy if you find them worthy of publication in the Journal of TPS. You can make any changes you like. We respect your suggestion & opinion much above us — both of us. I can say that on Rina's behalf also.

Do let me know your reactions.

Yours most truthfully,

Gulzar

TPS: The Poetry Society

2/4/94

My Dear J.P. Da',

Why have you stopped educating me? There is no letter, no story, no poem from you!

Last week I visited Bhopal for a day, and met Mr. Satyanand there. I felt so homely when he started talking about you. Mr. Satyanand was all praise for you, and that became an extra reason for me to like him. He is such a soft-spoken poet like gentleman.

Hope to hear from you.

Yours sincerely

Gulzar

Satyanand: ମଧ୍ୟପ୍ରଦେଶର ବରିଷ୍ଠ ପ୍ରଶାସକ ସତ୍ୟାନନ୍ଦ ମିଶ୍ର

19.4.2001

Dear J.P. Da,

I am sending you the poem in Hindi. Giving a title has always been a difficult task.

For all difficult tasks, I come to you!

I am also sending a poem in Urdu, for the cover of the journal. Kaul Saheb had asked for it, you know.

This trip to Delhi, and the evening with you on the 13th, was very fulfilling and memorable. We never had so much of time together.

Thanks for lots of things.

Gulzar

Kaul Saheb: ପୋଏଟ୍ରି ସୋସାଇଟି, ଇଣ୍ଡିଆର ସଂପାଦକ ଏଚ.କେ. କୌଲ

4.11.2001

Dear JP Da,

I came back this morning after ten days or so. It was so pleasant to receive your letter on arrival.

This is about the poem now.

'Qadrein' means 'values'. 'n' in 'qadrein' is only a nasal sound, and 'values' is used in relation to 'values of life'.

'Istalahein' means 'phrases' and 'proverbs'. 'Phrases' which are left like the earthen bowls after the drink, because the shiny glasses have put them out of circulation!

'Books', I think, is better than the other two titles. It could also be just 'pages', or 'the print'. But finally, you know better than me!

Gulzar

## ଖୁସି ପରିବାର

ଶାନ୍ତିନିକେତନ, ୧୮ ଅକ୍ଟୋବର ୯୩

[ ଜଣାଶୁଣା ସାହିତ୍ୟିକ କଇଳାଶ ପଟ୍ଟନାୟକ ଓ ଗିରିବାଳା ମହାନ୍ତିଙ୍କ ଛୋଟ ଝିଅ ଖୁସି 'ଆଳିମାଳିକା' ବହି ପଢିବା ପରେ ଗୀତରେ ଏ ଚିଠିଟି ମୋ ପାଖକୁ ଆସିଥିଲା । ]

୧୮.୧୦.୯୩
ଶାନ୍ତିନିକେତନ

ପାଇଲି 'ଆଳିମାଳିକା
ପଢ଼ିଲି ଖେଳିଖେଳିକା ।

ସେ ବାବଦ ଧନ୍ୟବାଦ ।

ଫକୀରମୋହନ
ଦାସେ ଆପଣ
ଆଉ ତିନି ରାୟ
ହାତୀ, ଘୋଡା, ବାଘ, ଭାଲୁ
ଜୀବ ଅତିକାୟ ।

ପଢ଼ି ଏ ସଭିଙ୍କ କଥା
'ଖୁସି' ହସି ହସି ଅଥା ।

ଲାଗିଲା ବହୁତ ଭଲ
'ଢେପିଙ୍କୁ' 'ଖୁସି'ର ଗେଲ ।

କବିଙ୍କୁ ନମସ୍କାର
ଇତି ଖୁସି ପରିବାର ।

ଫକୀରମୋହନ, ଦାସେ ଆପଣ ଇତ୍ୟାଦି 'ଆଳିମାଳିକା' ବହିର କବିତାର ବିଷୟ

## ହିଲଡା ହେଲୱିଗ

ଷ୍ଟକହମ (ସ୍ୱିଡେନ), ୧୩ ଡିସେମ୍ବର ୯୩

[ ମୁଁ Children's Film Society, India ସହିତ ସଂପୃକ୍ତ ଥିବା ବେଳେ ପାଞ୍ଚଟି ଅନ୍ତର୍ଜାତିକ ଫିଲ୍ମ ସମାରୋହରେ ଭାଗ ନେଇଥିଲି; ଏଗୁଡ଼ିକ ବାଙ୍ଗାଲୋର, ଭୁବନେଶ୍ୱର, ଦିଲ୍ଲୀ, ତିରୁବନନ୍ତପୁରମ ଓ ଉଦୟପୁରରେ ହୋଇଥିଲା । ତା ବ୍ୟତୀତ ମୁଁ ୧୯୯୦ରେ ଷ୍ଟକହମ (ସ୍ୱିଡେନ) ଓ ଅବୋ (ଫିନଲାଣ୍ଡ)ରେ ମଧ୍ୟ ଶିଶୁ ଚଳଚିତ୍ର ସମାରୋହରେ ଭାଗ ନେଇଥିଲି । ସେହି ସୂତ୍ରରେ ସ୍ୱିଡେନର ଅନେକ ଫିଲ୍ମ ନିର୍ଦ୍ଦେଶକଙ୍କ ସହିତ ମୋର ପରିଚୟ ହୋଇଥିଲା । ଉଦୟପୁର ସମାରୋହରୁ ଦିଲ୍ଲୀ ଫେରିବାବେଳେ ତରୁଣୀ ଫିଲ୍ମ ଓ ଥିଏଟର ନିର୍ଦ୍ଦେଶିକା ହିଲ୍‌ଡା ଓ ତାଙ୍କର ଯୁବକ ବନ୍ଧୁ ଷ୍ଟେଫାନଙ୍କ ସହିତ ମୁଁ ବେଶ କିଛି ସମୟ କଟାଇଥିଲି ଉଡ଼ାଜାହାଜ ବିଳମ୍ବରେ ଆସିଥିବାରୁ । ଷ୍ଟକହମ ଫେରିଯାଇ ସେ ଏହି ସରସ ଚିଠିଟି ପଠାଇଥିଲେ । ]

I'm happy you remember our nice flight trip together. I recall, with great satisfaction, our "film analysis". Isn't it odd that as soon the audience needs to *think*, it interprets that as a default in the representation? Well, it's not all the audience, just the "experts". Some empathy wouldn't hurt, though.

I'm really looking forward to reading your plays — as soon as I find an opening. As you might suspect I'm really very busy for the moment — but I don't complain. Right now we're rehearsing *Indras Dotter (Indra's Daughter)* at Teater Aurora, a play I've written together with Strindberg, Marx and Freud. It's very indecent and criticises my co-writers violently from a feminist standpoint.

Stefan sends his regards — and so do I.

Best Wishes

Hilda

Stockholm, December 13 1993

## ମଧୁ କିଶ୍ୱର

ଦିଲ୍ଲୀ, ୧ ଅଗଷ୍ଟ ୯୪

[ ମୁଁ ଦିଲ୍ଲୀରୁ ପ୍ରକାଶ ପାଉଥିବା 'ମାନୁଷୀ' ପତ୍ରିକାର ନିୟମିତ ପାଠକ ଥିଲି ଓ ତାର ସଂପାଦିକା ମଧୁ କିଶ୍ୱରଙ୍କର ପ୍ରଶଂସକ । ଥରେ ଏକ ବନ୍ଧୁମିଳନରେ ତାଙ୍କ ସହିତ ସାକ୍ଷାତ ହେବା ପରେ ମୁଁ 'ମାନୁଷୀ' ପାଇଁ କାମ କରିବା ପାଇଁ ଇଚ୍ଛା ପ୍ରକାଶ କରିଥିଲି । ତା ପରେ କିନ୍ତୁ ଆମର ଯୋଗାଯୋଗ ବିଚ୍ଛିନ୍ନ ହୋଇଯାଇଥିଲା ।

ପରେ ମଧୁ କିଶ୍ୱର ମୋ ପାଖକୁ ଆସିଲେ ଓଡ଼ିଆ ଲକ୍ଷ୍ମୀପୁରାଣର ଏକ ଇଂରେଜୀ ଅନୁବାଦ କରିଦେବା ପାଇଁ । ମୁଁ ତାଙ୍କ ପାଇଁ ଅନୁବାଦଟି କରି ଦେଇଥିଲି ଏବଂ ତାହା 'ମାନୁଷୀ'ରେ ପ୍ରକାଶ ପାଇଥିଲା । ତା ପରେ ମୁଁ ନିୟମିତ ଯାଇ ମାନୁଷୀ ଅଫିସରେ କିଛି ଘଣ୍ଟା କାମ କରୁଥିଲି । ପରେ ମୁଁ ମାନୁଷୀ ସଂଗଠନର ଟ୍ରଷ୍ଟି ହୋଇଥିଲି ।

୧୯୯୪ରେ ମୁଁ ଆମେରିକାରେ ଥିବା ବେଳେ ମଧୁ ଏ ଚିଠିଟି ଲେଖିଥିଲେ । ମାନୁଷୀ ପତ୍ରିକା କିଛି ବର୍ଷ ତଳେ ବନ୍ଦ ହୋଇଯାଇଥିଲା ଏବଂ ବର୍ତ୍ତମାନ ତାର ଇଣ୍ଟରନେଟ ସଂସ୍କରଣ ପ୍ରକାଶ ପାଉଛି । ମାନୁଷୀ ସଂଗଠନ ଦିଲ୍ଲୀରେ ଅନେକ ସମାଜ ସଂସ୍କାର କାମ ହାତକୁ ନେଇଛି । ]

1st Aug' 94

Dear J.P.

Thank you for the lovely picture post card. Even while I envy you your relaxed holiday, I know I'm incapable of it. I'm one of those destined to be a donkey and have made peace with my destiny.

The good news is that all the formalities regarding the society papers are over. Today I submitted our application in QUADRUPLICATE to the DDA. Sudnpto was very nice and very helpful and says we'll get something in the next 2-3 months.

I have rejoined Satyawati College after 3 ½ years. The classes have not begun yet. I'm planning to put in my resignation papers for voluntary retirement if the rules entitle me to a pension. Lots more are happening but if I start narrating it all, it will fill a Ramayana.

We all miss you in Delhi. Yadav ji, needless to say, is inconsolable.

Give my love to Mona and the baby and warm regards to your wife.

See you soon,

Madhu

Yadavji: ହିନ୍ଦୀ ଲେଖକ ରାଜେନ୍ଦ୍ର ଯାଦବ

## ସଚ୍ଚି ରାଉତରାୟ

କଟକ, ୨୪ ଡିସେମ୍ବର ୯୪

[ ଆମେମାନେ ସ୍କୁଲରେ ପଢିବା ବେଳକୁ 'ବାଜି ରାଉତ' ପ୍ରକାଶ ପାଇ ସାରିଥିଲା ଓ ସଚ୍ଚି ରାଉତରାୟ ପ୍ରବାଦ ପୁରୁଷରେ ଗଣା ହେଉଥିଲେ । ପରବର୍ତ୍ତୀ ସମୟରେ ସାହିତ୍ୟ ସଭା ସମିତିରେ ତାଙ୍କ ସହିତ ଯୋଗାଯୋଗ ହେଉଥିଲା । ମୋର 'ପ୍ରଥମ ପୁରୁଷ' ପ୍ରକାଶ ପାଇବା ପରେ ସେ 'ଝଂକାର'ରେ ତାର ଏକ ସମୀକ୍ଷା କରିଥିଲେ । ତାଙ୍କର 'ଦିଗନ୍ତ' ପତ୍ରିକା ପାଇଁ ମଧ୍ୟ ମୁଁ ଲେଖୁଥିଲି ।

ତାଙ୍କ ସହିତ ପୁଣି ଯୋଗାଯୋଗ ହେଲା ସେ ଯେତେବେଳେ ୧୯୮୬ରେ ଜ୍ଞାନପୀଠ ପୁରସ୍କାର ପାଇଁ ଦିଲ୍ଲୀ ଆସିଲେ । କିଛି ବର୍ଷ ପରେ ସୁରେଶ କୋହଲି ଦୂରଦର୍ଶନ ପାଇଁ ସଚ୍ଚି ରାଉତରାୟଙ୍କ ଉପରେ ଏକ ପ୍ରାମାଣିକ ଚିତ୍ର କରିବାକୁ କଟକ ଯାଇଥିବା ବେଳେ ମୁଁ ସେଠାକୁ ଯାଇଥିଲି । ସେ ବାଜି ରାଉତ ଠିକ ଭାବରେ ଆବୃତ୍ତି କରି ନ ପାରିବାରୁ ମୋତେ କିଛି ଧାଡ଼ି ପଢିବାକୁ ହୋଇଥିଲା । ]

ପ୍ରିୟ କେ.ପି.,

ଶୁଭେଚ୍ଛା । ଆପଣଂକୁ ଶୁଭ ନବବର୍ଷ କାମନା ଜଣାଉଛି । ଆପଣଂକର ୨୪।୯।୯୪ ତାରିଖର ଚିଠି ପାଇଁ ଧନ୍ୟବାଦ ଜଣାଉଛି । ମୁଁ ଅସୁସ୍ଥ ଥିବାରୁ ଶୀଘ୍ର ଉତ୍ତର ଦେଇ ପାରି ନ ଥିଲି । ଆଶା, କିଛି ମନେ କରିବେ ନାହିଁ ।

'ମଶାଣୀର ଫୁଲ'ର ଇଂରାଜୀ ଅନୁବାଦ "Short Stories of Sochi Routray" ନାମକ ପୁସ୍ତକରେ ୧୯୭୨ ମସିହାରେ J. Mohapatra & Co. ନିମଚୌଡି, କଟକ-୨ ଦ୍ୱାରା ପ୍ରକାଶିତ ହୋଇଥିଲା । ଏହା ମଧ୍ୟ ପୂର୍ବରୁ ୨ ଥର କଲିକତାର ଇଂରାଜୀ ଦୈନିକ 'ଅମୃତ ବଜାର' ପତ୍ରିକାର ରବିବାର ସଂଖ୍ୟାରେ ପ୍ରକାଶ ପାଇଥିଲା । ଏହି ଗଳ୍ପଟି ଜବାହାରଲାଲ ନେହେରୁ ବିଶ୍ୱବିଦ୍ୟାଳୟର ୨ ଜଣ ପ୍ରାଧ୍ୟାପକ ତାଂକ ପ୍ରସ୍ତାବିତ ଦକ୍ଷିଣ ପୂର୍ବ ଏସିଆ ଗଳ୍ପ ସଂକଳନରେ ଛାପି ପାରଂତି । ମୋର କୌଣସି ଆପତ୍ତି ନାହିଁ । ସେମାନଂକୁ ମୋତେ ଅନୁମତି ପତ୍ରର ୨ ଖଣ୍ଡ କପି ପଠାଇବାକୁ କହିବେ । ମୁଁ ଦସ୍ତଖତ କରି ପଠାଇଦେବି ।

ଏହି ଗଳ୍ପର ଇଂରାଜୀ ଅନୁବାଦ କିଶୋର ଚରଣ ଦାସଂକ ସଂପାଦିତ I.C.C.R. ଦ୍ୱାରା ପ୍ରକାଶିତ ଇଂରାଜୀ ଗଳ୍ପ ସଂକଳନରେ ମଧ୍ୟ ପ୍ରକାଶ ପାଇଥିଲା । ତେବେ ସେ ଗଳ୍ପର ଶିରୋନାମାଟି ବଦଳାଇ ଦେଇଥିଲେ ।

Poetry Journal ରେ ପ୍ରକାଶିତ ମୋ କବିତା ପରିଚୟ ପତ୍ରର ଆପଣ କରିଥିବା ଇଂରାଜୀ ଅନୁବାଦଟି ମୋର ଦରକାର, ମୁଁ ତାର ଏକ cutting ପଠାଇବାକୁ ଆପଣଂକୁ ଲେଖିଥିଲି । ମାତ୍ର ଆପଣ ପଠାଇନାହାଂତି । ଦୟାକରି ଓଡ଼ିଆ ଓ ଇଂରାଜୀ ଅନୁବାଦର cutting ପଠାଇବାକୁ ଅନୁରୋଧ ।

ଆଶା ଭଲରେ ଥିବେ । ମଝିରେ ମଝିରେ ଚିଠିପତ୍ର ଦେଉଥିବେ । ମୋ ଆଖିର ଅବସ୍ଥା ବହୁତ ଖରାପ । ମୁଁ ବଡ଼ ଅସୁବିଧାରେ ଅଛି । ଇତି ।

ଆପଣଂକର

ସଚ୍ଚି ରାଉତରାୟ

Date 25.12.94

ପ୍ରିୟ କେ.ପି.,

ଆପଣଂକର ତା୨୪.୧୦.୯୪ରିଖର ଚିଠିର ଉତ୍ତର ମୁଁ ୨୩.୧୨.୯୪ ତାରିଖରେ ଦେଇଛି । ସେଥିରେ ଗୋଟିଏ ବିଷୟ ପଚାରିବାକୁ ଭୁଲିଯାଇଛି ।

ଆପଣ ଲେଖିଥିଲେ ଯେ ଶ୍ରୀ ସୁରେଶ କୋହଲି ଦୂରଦର୍ଶନ ପାଇଁ ମୋ ଉପରେ ଆଧାରିତ ଏକ ପ୍ରାମାଣିକ ଚିତ୍ର ପ୍ରସ୍ତୁତ କରୁଛଂତି, ସେ ମୋତେ ଏପର୍ଯଂତ କିଛି ଲେଖି ନାହାଂତି ନା କିଛି ତଥ୍ୟ ମାଗିନାହାଂତି । ତାଂକର ଚିତ୍ରଟି ହେଉଛି କି ନାହିଁ ଦୟାକରି ଜଣାଇବେ । ସେ ଯଦି କରୁଥାଂତି ତେବେ କେତେ ଦୂର ଯାଇଛି ଦୟାକରି ସୂଚନା ଦେବେ ।

ଆଶା, ଭଲ ଅଛଂତି, ଏହି ଅବସରରେ ଶୁଭ ନବବର୍ଷ କାମନା କରୁଛି ।

ଇତି, ଆପଣଙ୍କର

ସଚ୍ଚି ରାଉତରାୟ

## ହେମନ୍ତ ଦାସ

କଟକ, ୧ ଜୁଲାଇ ୯୫

[ ହେମନ୍ତ ଦାସ ଓଡ଼ିଶାର ଅଭିନୟ ଜଗତରେ ଜଣାଶୁଣା । ସେ ମୋର କଲେଜ ବେଳର ବନ୍ଧୁ ଥିଲେ । ପରବର୍ତ୍ତୀ ସମୟରେ ନାଟକ ମାଧ୍ୟମରେ ତାଙ୍କ ସହିତ ସଂପର୍କ ଆହୁରି ବଢ଼ିଥିଲା । ଅନନ୍ତ ମହାପାତ୍ରଙ୍କ ନିର୍ଦ୍ଦେଶନାରେ ସେ ୧୯୭୨ରେ 'ଅମୃତସ୍ୟ ପୁତ୍ର' ନାଟକରେ ଅଭିନୟ କରିଥିଲେ ଓ ମୁଁ Enact ପତ୍ରିକାରେ କରିଥିବା ସମୀକ୍ଷାରେ ତାଙ୍କ ଅଭିନୟର ପ୍ରଶଂସା କରିଥିଲି । ମୁଁ ଓଡ଼ିଶା ଫିଲ୍ମ ଡେଭଲପମେଣ୍ଟ କର୍ପୋରେଶନ ବୋର୍ଡରେ ଥିବା ବେଳେ ଫକୀର ମୋହନଙ୍କର ପେଟେଣ୍ଟ ମେଡିସିନ ଉପରେ 'ସୁଲୋଚନା' ଫିଲ୍ମ କରିବା ପାଇଁ ହେମନ୍ତ କର୍ପୋରେଶନରୁ ଋଣ ନେଇଥିଲେ ଏବଂ ବିଭିନ୍ନ କାରଣରୁ ଫିଲ୍ମଟି ସମାପ୍ତ କରି ପାରି ନ ଥିଲେ ।

ପରେ ସେ ମୋତେ ବାରମ୍ବାର କହୁଥିଲେ ଯେ ସେ ନଅଙ୍କ ଦୁର୍ଭିକ୍ଷ ଉପରେ ଗୋଟିଏ ଫିଲ୍ମ କରିବେ । ଏଥିପାଇଁ ମତେ ମଝିରେ ମଝିରେ ଫୋନ କରୁଥିଲେ; ଅଧିକାଂଶ ସମୟରେ ରାତିର ବିଳମ୍ବିତ ପ୍ରହରରେ । ମୃତ୍ୟୁ ପୂର୍ବରୁ ଦିନେ ଫୋନ କରି ସେ ମତେ ପଚାରିଥିଲେ କ୍ୟାମ୍ପବେଲ ରିପୋର୍ଟ କେଉଁଠି ମିଳିବ । ମୁଁ ହଠାତ ବୁଝିପାରିଲି ନାହିଁ । ପରେ ବୋଧ ହେଲା ଯେ ସେ ଦୁର୍ଭିକ୍ଷ କମିଶନ ରିପୋର୍ଟ ବିଷୟରେ ପଚାରୁଥିଲେ । ]

Date 01.07.95

My Dear J.P.,

Please don't be surprised to get this letter. I have been thinking for a pretty long time to implore you to save me and my project "SULOCHANA" and the time has now come when your kind help will go a long way in solving my problem.

As you know the O.F.D.C. has sanctioned a loan amounting To Rs. 10 Lakhs and they are not in a position to provide further finance. Under this circumstances, I applied to N.F.D.C. through OFDC for further finance. In this process NFDC asked me to show our Rushes to them at Bombay and the official members have seen our picture Rushes on 24th June last. But as you are aware, the Board has not been reconstituted since the expirey of term of the last board. Hence, the Secretary, I&B, Mr. Bhaskar Ghose, Joint Secretary, Mrs. Bhora and the General Manager Mr. Malik reviewed the progress and the quality of my picture. I am in complete darkness about their decision. But it is learnt that the decision of Mr. Bhaskar Ghose, in this regards, is final. Could you kindly

put a work to Mr. Ghose giving him some hints about the many positive aspects of my project? You also know the pain I had undertaken to bring this project from zero to this stage. Of course your unflinching help, all through, has been asset for me. It is needless to repeat that "I am in distress". This is all about me and "Sulochana".

Now about my next dream. Yes! The dream is 1866-67-68 famine in Orissa and I must beg excuse again for the mistake I made by announcing your name as Screen play and Dialogue Writer of my dream project in a local film magazine without your knowledge. I still remember, your were visibly annoyed when I first mentioned about this when we met last. From then I have not repeated the mistake again.

I was brooding over this project for a long time before I came across your book "Desha - Kala - Patra." It opened up my vision, since then, providing me with sufficient background material to do some some work over it. Some food for thought about the project are here under:

(1) A lengthy TV serial in Oriya.

(2) The title of the Film is - "ଚାଲ କ୍ଷେତ୍ର ଯିବା"

This title suggests a march of a desperate nation towards the abode of Lord Jagannath with the faith, belief and conviction that only the lord could save this nation from extermination.

"ଚାଲ କ୍ଷେତ୍ର ଯିବା – ଜଗନ୍ନାଥଙ୍କ ଚରଣ ତଳେ ଶରଣ ପଶିଯିବା "

This couplet will be the theme song being used time and again to inspire the dying moral of the human morass. It can start with a solo voice transformed into thousands of voices symbolising the cry of a nation in distress. With this background of human morass we would like to depict the entire socio-economic and political picture of Orissa during the dark days of famine based on historical human stories. You will certainly agree that the historical facts during the famine provides lot of drama for a perfect tragedy. This is broadly the frame work of the Screen Play I have thought of and the rest is left to your creative style. This is only the beginning and lot of interaction is needed between us before we go ahead with the project and I am now ready for an indepth discussion.

By the by you will be glad to know that I have been enlisted as an outside Film Maker in the panel prepared by Doordarshan, Bhubaneswar and I hope this project will certainly find a place in TV as a great work with your creative co-opereation. I am eagerly waiting to meet you and discuss several things during your next visit to Orissa. Kindly let me know if you like this project and time of your next visit to Orissa. I shall give you ring on 4th July '95 between 7.00 AM to 7.30 AM and talk to you in detail.

I hope this letter will find you in one of your finest moods.

Yours affectionately,

Hemanta

# ଭାରତ କିଶୋର ପ୍ରଧାନ

ସମ୍ବଲପୁର, ୨୯ ଜୁଲାଇ ୯୫

[ ଅପରିଚିତ ପାଠକମାନଙ୍କ ପାଖରୁ ମୁଁ ଯାହା ଅଳ୍ପ କିଛି ପତ୍ର ପାଇଥାଏ ଏଇଟି ତା ଭିତରୁ ଅନ୍ୟତମ ।

ଏ ଚିଠିର ପ୍ରାୟ ପାଞ୍ଚବର୍ଷ ପରେ ମୁଁ ସମ୍ବଲପୁର ଯାଇଥିବା ବେଳେ କବି ଦୁର୍ଗାପ୍ରସାଦ ପଣ୍ଡାଙ୍କ ସୌଜନ୍ୟରୁ ସେଠାରେ ଭାରତ କିଶୋରଙ୍କୁ ଭେଟିବାର ସୁଯୋଗ ପାଇଥିଲି । ]

ସଂବଲପୁର
୨୯.୭.୯୫

ସମ୍ମାନନୀୟ ମହାଶୟ,

ନମସ୍କାର ନେବେ । ୧୦ ମାସ ଆଗରୁ କବିତାର ନାଁ ଶୁଣିଲେ ବିରକ୍ତ ଲାଗୁଥିଲା । କୌଣସି ସାହିତ୍ୟ ପତ୍ରିକା ପାଇଲେ କବିତା ବ୍ୟତୀତ ଅନ୍ୟ ସବୁ ପଢୁଥିଲୁ । କବିତା ଥିଲା ଆମ ପାଇଁ ଦୁର୍ବୋଧ ତଥା ବିରକ୍ତିକର ଏବଂ ଆଧୁନିକ କବିକୁ ଆମେ ଥଟ୍ଟାରେ ବସ କଣ୍ଡକ୍ଟର କହୁଥିଲୁ । (ବସ କଣ୍ଡକ୍ଟର ଟିକଟରେ କଣ ଲେଖେ ସେ ନିଜେ ଜାଣେ ଓ ଆଧୁନିକ କବି କବିତାରେ କଣ ଲେଖେ ସେ ନିଜେ ବୁଝେ ବୋଲି କହୁଥିଲୁ) କିନ୍ତୁ ଆକସ୍ମିକ ଭାବେ ପୁରୁଣା ଝଙ୍କାରରେ ଆପଣଙ୍କ ଲିଖିତ କବିତା 'ସାର୍ବଜନୀନ' ପଢିଲା ପରେ କବିତା ପ୍ରତି ଅସ୍ୱାଭାବିକ ଦୁର୍ବଳତା ଜାତ ହେଲା ଏବଂ ଘରେ ଥିବା ପୁରୁଣା ଝଙ୍କାର ସବୁ ଖୋଜି ଆପଣଙ୍କ କବିତା ସବୁ ପଢିବା ଆରମ୍ଭ କଲୁ । ଆପଣଙ୍କ କବିତା ପଢିଲା ପରେ କବିତା ପ୍ରତି ଥିବା ଆମ ଭୁଲ ଧାରଣା ଦୂର ହେଲା ଏବଂ ହୃଦୟଙ୍ଗମ ହେଲା କି କବିତା ବିନା ଆଧୁନିକ ସାହିତ୍ୟର ସୃଷ୍ଟି ଅସମ୍ଭବ । କବିତା ଖୁବ୍ କମ ସମୟରେ ଜଣକ ମନକୁ ଛୁଇଁପାରେ, ଯାହାକି ସାହିତ୍ୟର ଅନ୍ୟ ବିଭାଗ ଯଥା ଗଳ୍ପ କିମ୍ବା ଉପନ୍ୟାସ ଦ୍ୱାରା ସମ୍ଭବ ନୁହେଁ । ତେବେ ଅନେକ କବି ଅଛନ୍ତି ଯେଉଁମାନଙ୍କ କବିତା ଅତ୍ୟନ୍ତ ଦୁର୍ବୋଧ ଓ ସାଧାରଣ ପାଠକ ପାଇଁ ସେ ସବୁ ବୁଝିବା କଷ୍ଟକର ହେଉଥିବାରୁ ବିରକ୍ତିକର ନିଶ୍ଚୟ ।

University Libraryରୁ ଆପଣଙ୍କ କବିତା ସଂକଳନ ଯାହା ମିଳୁଛି, ତାର Xerox Copy ରଖୁଛୁ । ଏ ପର୍ଯ୍ୟନ୍ତ ଆପଣଙ୍କ ଦ୍ୱାରା ଲିଖିତ ପ୍ରଥମ ପୁରୁଷ, ଅନ୍ୟ ସବୁ ମୃତ୍ୟୁ, ଯେ ଯାହାର ନିର୍ଜନତା, କିଛି ବର୍ଷା କିଛି ରାସ୍ତା କିଛି ନିର୍ଜନତା, ଯାତ୍ରାର ପ୍ରଥମ ପାଦ ଓ ଶ୍ରେଷ୍ଠ କବିତା ସଂକଳନ ସବୁ ପଢିସାରିଛୁ । କିନ୍ତୁ ଆପଣଙ୍କ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ କାବ୍ୟଗ୍ରନ୍ଥ 'ଆହ୍ନିକ' ତଥା ବହୁ ଚର୍ଚ୍ଚିତ କବିତା ସଂକଳନ 'ପ୍ରେମ କବିତା' ଏଠାରେ ମିଳୁ ନ ଥିବାରୁ ପଢିବାର ସୁଯୋଗରୁ ବଞ୍ଚିତ ହୋଇଛୁ । ତେଣୁ ଦୟାକରି ଉକ୍ତ ପୁସ୍ତକ ଦୁଇଟିର ବିତରକଙ୍କ ନାମ ଜଣାଇବାକୁ ଅନୁରୋଧ ।

ମୁଁ ଯଦିଓ ଆପଣଙ୍କ କବିତାକୁ ସମୀକ୍ଷା କରିବାର ଦୁଃସାହସ କରୁନାହିଁ ଯେହେତୁ ଆପଣଙ୍କ କବିତାର ସମୀକ୍ଷକ ହେବା ପାଇଁ ମୋର ଯୋଗ୍ୟତା ଏପର୍ଯ୍ୟନ୍ତ ହୋଇନି ତଥାପି ଏତିକି କହିରଖେ କି ଆପଣଙ୍କ କେତେକ କବିତାର Philosophy ଆମେ (କବିତାର ନୂଆ ପାଠକ) ବୁଝି ନ ପାରିଲେ ବି କବିତାକୁ ବାରମ୍ବାର ପଢିବାକୁ ଇଚ୍ଛା ହୁଏ । ଏହାହିଁ ଆପଣଙ୍କ କବିତାର ବିଶେଷତ୍ୱ ଯେଉଁଟାକି ମୁଁ ଅନ୍ୟ କବିଙ୍କ କବିତାରେ ପାଏ ନାହିଁ । କିଛି ବର୍ଷା କିଛି ରାସ୍ତା କିଛି ନିର୍ଜନତାର 'ଦେବୀ' ଓ 'ଝରକା' କବିତା ଦୁଇଟି 'ଶ୍ରେଷ୍ଠ କବିତା' ସଂକଳନରେ ସ୍ଥାନ ପାଇବା ଉଚିତ ଥିଲା ବୋଲି ମୁଁ ଭାବୁଛି । ଆମର ପୂର୍ବରୁ ଧାରଣା ଥିଲା କି ଆପଣଙ୍କ କେବଳ Romantic poemରେ ଏକଚାଟିଆ ଅଧିକାର ଅଛି । କିନ୍ତୁ 'ବଡ଼ଦାଣ୍ଡରେ ଭିକାରୀ' କବିତା ପଢିଲା ପରେ ଆପଣଙ୍କ ଉପରେ ଆମର ଧାରଣା ଭୁଲ ପ୍ରମାଣିତ ହୋଇଥିଲା । ମୋ ମତରେ ଏହା 'ଶ୍ରେଷ୍ଠ କବିତା' ସଂକଳନର ଶ୍ରେଷ୍ଠ କବିତା । ଆପଣଙ୍କ କବିତା କୌଣସି ଏକ ନିର୍ଦ୍ଦିଷ୍ଟ ଭାବରେ ସୀମାବଦ୍ଧ ନୁହେଁ ଯଦିଓ Romantic poem ଲେଖିବାରେ ଆପଣଙ୍କୁ ଅପରାଜେୟ ସମ୍ରାଟ କହିଲେ ମୋ କିଛି ଭୁଲ ହେବ ନାହିଁ ।

ଆପଣଙ୍କ କବିତା ସଂକଳନ ସବୁ ପଢିଲା ପରେ ମୁଁ ଆପଣଙ୍କ କବିତାରେ ଅନୁପ୍ରାଣିତ ହୋଇ ନିଜ Diaryରେ କବିତା ଲେଖିବା ଆରମ୍ଭ କରି ଦେଇଛି । ଅବଶ୍ୟ ସେ ସବୁ କୌଣସି ପତ୍ରିକାରେ ପ୍ରକାଶ ଉପଯୋଗୀ ହେବ ବୋଲି ମୁଁ ଭାବୁ ନାହିଁ । ମୋର ଅଜାଣତରେ କବିତା ଗୁଡ଼ିକରେ ଆପଣଙ୍କ ଶୈଳୀ ଚୋରୀ ହୋଇଯାଇଛି ଯଥା ମୁଁ ପଠାଇଥିବା କବିତା ନିରୁଦ୍ଦିଷ୍ଟା ହଳଦୀ ବସନ୍ତରେ ପରିଚୟହୀନତାର ଅଚିହ୍ନା ମୁହଁଙ୍କ ଭିତରେ ତଥା ଯୌବନର ଅଭିଷେକ କବିତାରେ ବିତସ୍ପୃହ, ପୁରୋହିତଙ୍କ ସ୍ତୋତ୍ର ପାଠ । ଆପଣଙ୍କ ଦ୍ୱାରା ବ୍ୟବହୃତ

ଶବ୍ଦକୁ ନେଇ କବିତା ଲେଖିବା ଆପଣଙ୍କ Copyrightରେ ମୋର ଅନଧିକାର ପ୍ରବେଶ ଭାବୁଛି । ତେଣୁ ମୁଁ ପଠାଇଥିବା କବିତା ଦୁଇଟିକୁ ପଢି ଆବଶ୍ୟକୀୟ ସଂଶୋଧନ କରି ମୋତେ ଆପଣଙ୍କ ସୁଚିନ୍ତିତ ପରାମର୍ଶ ଦେବାକୁ ଅନୁରୋଧ ।

ଆପଣଙ୍କ ଅପ୍ରକାଶିତ କବିତା ସବୁ ନିକଟ ଭବିଷ୍ୟତରେ କେଉଁ ସବୁ ପତ୍ରିକାରେ ପ୍ରକାଶ ପାଇବ ଲେଖି ଜଣାଇବେ । ଶେଷରେ ଆପଣଙ୍କ ବହୁମୂଲ୍ୟ ସମୟ ନଷ୍ଟ କରିଥିବାରୁ କ୍ଷମା ଚାହେଁ ।

। ଇତି ।

ଆପଣଙ୍କର ବିଶ୍ୱସ୍ତ

ଭାରତ କିଶୋର ପ୍ରଧାନ

୨୯.୭.୯୫

## ପ୍ରଣତି ପରିଡ଼ା

ପିପିଲି, ୨୨ ଅଗଷ୍ଟ ୯୫

[ ଦ ପୋଏଟ୍ରି ସୋସାଇଟି, ଇଣ୍ଡିଆ ଆନୁକୂଲ୍ୟରେ ଯେଉଁ ଯୁବ କବି କର୍ମଶାଳାମାନ ହେଉଥିଲା, ସେଥିରୁ ପ୍ରତିଥର ଭୁବନେଶ୍ୱରରେ ଏକ କର୍ମଶାଳା ହେଉଥିଲା । ଅନେକ ବର୍ଷ ଧରି ଚାଲୁଥିବା ଏହି କର୍ମଶାଳାରେ ଯୁବ କବି ଭାବେ ଯୋଗ ଦେଇଥିବା କେତେକ କବି (ଯଥା ପ୍ରୀତିଧାରା ସାମଲ, ଇପ୍‌ସିତା ଷଡ଼ଙ୍ଗୀ) ପରବର୍ତ୍ତୀ କର୍ମଶାଳାରେ ଜ୍ୟେଷ୍ଠ କବି ଭାବରେ ଯୋଗ ଦେଇ ମାର୍ଗଦର୍ଶନ ଦେବାର ଉଦାହରଣ ଅଛି । ମୁଁ ଏଥିରୁ ଅଧିକାଂଶ କର୍ମଶାଳାରେ ଭାଗ ନେଇଛି ଏବଂ ଏଠାକୁ ଆସିଥିବା କିଛି ଯୁବ କବି ପରବର୍ତ୍ତୀ ସମୟରେ ମୋ ସହିତ ଯୋଗାଯୋଗ ରଖିଛନ୍ତି ।

ଏଇ ଭଳି ଏକ କର୍ମଶାଳାରେ ଯୋଗ ଦେଇଥିବା ପ୍ରଣତିଙ୍କୁ ସେଥର କର୍ମଶାଳାର କ୍ଲାସ ଘରେ 'ମନିଟର୍'ର ଦାୟିତ୍ୱ ଦିଆଯାଇଥିଲା । ତାର କିଛି ବର୍ଷ ପରେ ମୁଁ ଏହି ଦୁଃଖଦାୟକ

ଚିଠିଟି ପାଇଥିଲି । ମୁଁ ସେତେବେଳର ଓଡ଼ିଶା ସାହିତ୍ୟ ଏକାଡେମି ସଭାପତି ଓ ସଂସ୍କୃତି ବିଭାଗର ମନ୍ତ୍ରୀ (ଦୁହେଁ ମୋର ବ୍ୟକ୍ତିଗତ ଭାବେ ଜଣା ଥିଲେ)ଙ୍କୁ ଏ ବିଷୟରେ ଜଣାଇଥିଲି । ମୋର ଯେତେଦୂର ମନେ ପଡୁଛି, ସେମାନେ ଏ ବିଷୟରେ କୌଣସି ପଦକ୍ଷେପ ନେଇ ନ ଥିଲେ । ]

ସମ୍ମାନୀୟ ସାର୍,

ମୋର ପ୍ରଣାମ ନେବେ । ଆଶା, ଖୁବ୍ ଭଲରେ ଥିବେ । ଚିଠିଟିଏ ଲେଖୁଛି ଆଜି, ଲେଖିବା ଉଚିତ୍ ଓ ଜରୁରୀ ମନେ କରି । ଯେତେବେଳେ ମୁଁ କିଛି କରିପାରୁନି ମୋ ସାମ୍ନାରେ ପୋକମାଛି ପରି ମରିବାକୁ ଯାଉଛନ୍ତି ଓଡ଼ିଆ ସାହିତ୍ୟର ଉଜ୍ଜ୍ୱଳ ପ୍ରଦୀପ ଶ୍ରୀମାନ୍ ଫତୁରାନନ୍ଦ ।

ସାର୍, ମୁଁ ଫତୁରାନନ୍ଦଙ୍କୁ ଦେଖିଯାଇଥିଲି, ଆଖିଦେଖା କଥା ଲେଖୁଛି । ଫତୁରାନନ୍ଦ ପଡ଼ିରହିଛନ୍ତି ବେଡ୍‌ରେ । ଚାରିପଟେ ଝାଡ଼ା, ପରିସ୍ରାରେ ଜୁଡୁବୁଡୁ ଲୁଗାପଟା । ଗନ୍ଧମୟ ପରିବେଶ । ପୋକମାଛି ପରି ପଡ଼ିଛନ୍ତି ସେ । ଫ୍ୟାନ୍‌ଟେ ଘୁରୁଛି, କେହି ନାହିଁ ପାଖରେ । ସମସ୍ତେ ଛାଡ଼ି ଚାଲିଯାଇଛନ୍ତି । ତାଙ୍କ ପୋଷା ପୁଅ ପଚାରୁନାହାନ୍ତି ତାଙ୍କୁ । ଗଛରେ ପାଣିଦେଲା ପରି କାହାର ଇଚ୍ଛା ହେଲେ କିଏ କଣ ଟିକେ ଖାଇବାକୁ ଦଉଛନ୍ତି ନାଇଁ ତ, ଉପାସ ।

ତାଙ୍କୁ ଜଗିରହିଥିବା ତାଙ୍କର ପ୍ରିୟ ଭୃତ୍ୟ ଦେବୁ, ଛାଡ଼ି ଚାଲିଯାଇଥିଲେ ତାଙ୍କ ଗାଁକୁ । ବାର୍ଦ୍ଧକ୍ୟ ଓ ରୁଗ୍‌ଣାରେ ସଢୁଥିଲେ ଫତୁରାନନ୍ଦ । ତାଙ୍କର ଅବସ୍ଥା ମୁଁ ବର୍ଣ୍ଣନା କରିପାରୁନି । ଏମିତି କଣ ଦୀନହୀନ ଅବସ୍ଥାରେ ଫତୁରାନନ୍ଦ ଝରିପଡ଼ିବେ ? ଆମେ କେହି କିଛି କରିପାରିବୁନି ? ତାଙ୍କ ପରିବାର ଲୋକେ ଚାହିଁବସିଛନ୍ତି ତାଙ୍କ ମୃତ୍ୟୁର ପରଦିନ ହିଁ ତାଙ୍କ ଘର ମାଡ଼ିବସିବେ ।

ଅନ୍ତତଃ ତାଙ୍କୁ ଯଦି Govt. hospitalରେ ରଖାଯାନ୍ତା କିଛି care ତ ପା'ନ୍ତେ । ତାଙ୍କ ଦେହସାରା Bedshore ଭର୍ତ୍ତି । ସାର୍, ଆପଣଙ୍କୁ ମୋର ଆନ୍ତରିକ ଅନୁରୋଧ ଅନ୍ତତଃ ଶେଷ ମୂହୁର୍ତ୍ତରେ ଗୋଟେ ପରିଷ୍କାର ପରିଚ୍ଛନ୍ନ ପରିବେଶରେ କଟୁ ତାଙ୍କର ।

ମୁଁ କଣ କରିପାରିବି ମୋତେ ଲେଖିଲେ ଖୁସିହେବି । ସାର୍, ଆପଣ ନିଶ୍ଚୟ ଚେଷ୍ଟା କରିବେ । ଆମ ପ୍ରିୟ ସାହିତ୍ୟିକଙ୍କୁ ଏମିତି ଝରିପଡିବାକୁ ଦବାନି ।

ଏବେ ମୁଁ ଘରେ ବସି ପଢୁଛି ଏବର୍ଷ B.A. ପରୀକ୍ଷା ଦେବି । ଇତି ।

ପ୍ରଣତୀ (ମନିଟର ଝିଅ)

ତା୨୨.୮.୯୫

## ରଂଗନାଥ ମିଶ୍ର

ଦିଲ୍ଲୀ, ୧୮ ମାର୍ଚ୍ଚ ୯୬

[ ସୁପ୍ରିମ କୋର୍ଟର ମୁଖ୍ୟ ବିଚାରପତି ପଦରୁ ଅବସର ନେଇଥିବା ଜଷ୍ଟିସ୍ ରଂଗନାଥ ମିଶ୍ରଙ୍କୁ ମୁଁ ପିଲାଦିନରୁ ଜାଣେ । ବାଣପୁର ଆମ ଦୁହିଁଙ୍କର ଜନ୍ମସ୍ଥାନ ଏବଂ ବାଣପୁର ହାଇସ୍କୁଲରେ ସେ ବାପାଙ୍କର ଛାତ୍ର ଥିଲେ । ସେହି ଦିନଠାରୁ ତାଙ୍କ ସହିତ ମୋର ଯୋଗାଯୋଗ ରହି ଆସିଛି ଏବଂ ସେ ଯେଉଁ ଦୀର୍ଘ ସମୟ ଦିଲ୍ଲୀରେ ଥିଲେ, ଆମର ନିୟମିତ ସାକ୍ଷାତ ହେଉଥିଲା ।

ବାଣୀବିହାରରେ ପ୍ରତିବର୍ଷ ହେଉଥିବା "ଶ୍ରୀଧର ଦାସ ସ୍ମାରକୀ ବକ୍ତୃତା ମାଳା"ରେ କହିବା ପାଇଁ ମୁଁ ତାଙ୍କୁ ଅନୁରୋଧ କରି ଚିଠି ଲେଖିଥିଲି; ଏଇଟି ତାର ଉତ୍ତର । ]

୧୮.୩.୧୯୯୬

ଜେ.ପି.,

ତୁମ ଆଠ ତାରିଖ ପାଇଛି । ତୁମମାନଙ୍କ ସହିତ ସଂପର୍କ ଦୃଷ୍ଟିରୁ ବାଣୀବିହାର ଯାଇ ସ୍ମାରକୀ ବକ୍ତୃତା ଦେବା ତ କିଛି ଅଧିକ କଥା ନୁହେଁ । ଏ ଭିତରେ ବହୁତ ବୁଲିବାକୁ ପଡୁଛି । ମୁଁ ଏହି ୧୫ ଦିନ ଭିତରେ ମାଡ୍ରାଜ, ବମ୍ବେ, ଇନ୍ଦୋର, ହାଇଦ୍ରାବାଦ ଆଦି ଯାଇ ଫେରିଛି । ଉଡାଜାହାଜବାଲା ବହୁ ହଇରାଣ କରୁଛନ୍ତି ସମୟାନୁଯାୟୀ ନ ଚଳାଇ ।

ସମସ୍ତେ ନିଜ ନିଜ ବାଟରେ ଚାଲିଛନ୍ତି । ଫଳରେ ଶୃଙ୍ଖଳା ଅଭାବରେ ବହୁଲୋକଙ୍କର ସମାଜ ଠିକ୍ ବାଟରେ ଯିବାକୁ ଅକ୍ଷମ ହୋଇପଡୁଛି ।

ଭଲ ଥିବ ଆଶା କରୁଛି ।

ସାକ୍ଷାତରେ କଥା ହେବା ।

ତୁମର

ରଙ୍ଗନାଥ ମିଶ୍ର

# ନିରଂଜନ ବେହେରା

ନଛିପୁରିଆ, ୩୦ ଜୁଲାଇ ୯୬

[ ମୟୂରଭଂଜର ମଫସଲ ଗାଁ ନଛିପୁରିଆର ନିରଂଜନ ବେହେରା ପିଲାମାନଙ୍କ ପାଇଁ ଏକ ଲାଇବ୍ରେରି କରିଥିବା ବିଷୟରେ ମୋତେ ଜଣାଇବା ପରେ ମୁଁ ତାଙ୍କ ପାଖକୁ ମୋର 'ଆଲିମାଲିକା' ବହି ପଠାଇଥିଲି । ତାର ଉତ୍ତରରେ ସେ ଏଇ ଚିଠିଟି ପଠାଇଥିଲେ । ତା ପରେ ସେ ନିଜର ଲେଖା କିଛି କବିତା ବହି ପଠାଇଥିଲେ ଯାହାକୁ ପଢି ମୁଁ ଜାଣିଲି ଯେ ଓଡ଼ିଆ ନନ୍‌ସେନ୍‌ସ୍ ସାହିତ୍ୟରେ ସେ ଜଣେ ଅସାଧାରଣ ପ୍ରତିଭା । ସୁମନ୍ୟୁ ଶତପଥୀ ଯେତେବେଳେ ତାଙ୍କର The Tenth Rasa ପାଇଁ ତଥ୍ୟ ସଂଗ୍ରହ କରୁଥିଲେ, ମୁଁ ତାଙ୍କୁ ନିରଂଜନ ବେହେରାଙ୍କ ଲେଖା ବିଷୟରେ ସୂଚନା ଦେଇଥିଲି ଏବଂ ସେ ନଛିପୁରିଆ ଯାଇ ତାଙ୍କୁ ଭେଟିଥିଲେ । ]

<u>ଜ୍ଞାନଂ ଶରଣଂ ଗଚ୍ଛାମି</u>

୩୦ ।୬ ।୯୬

Respected Sir,

ସାରସ୍ୱତ ପ୍ରଣାମ । ବାଳିସ୍ଥାତ ପାଠାଗାର ପାଇଁ ଆପଣ ପଠାଇଥିବା 'ଆଳିମାଳିକା' ପୁସ୍ତକଟି ପାଇଛି । ଏଥିରେ ଥିବା କବିତାଗୁଡ଼ିକ ପ୍ରକୃତରେ ଉଚ୍ଚକୋଟୀର । ବିଶେଷତଃ ଯେଉଁ ଆଠଗୋଟି Limerick ଆପଣ ରଚନା କରିଛନ୍ତି ତାର ପଟାନ୍ତର ନାହିଁ ।

ଓଡ଼ିଆ ଭାଷାରେ ପ୍ରଥମେ ଲିମେରିକ୍ କିଏ ଲେଖିଥିଲେ ଜାଣେନା । ତେବେ ପୂଜ୍ୟ ଉଦୟନାଥ ଷଡ଼ଙ୍ଗୀଙ୍କର ୧୬ଟି ଲିମେରିକ୍ ପ୍ରଥମେ ମୋର ଦୃଷ୍ଟି ଆକର୍ଷଣ କରିଥିଲା । ପୂଜ୍ୟ ସ୍ୱର୍ଗତଃ ରାମକୃଷ୍ଣ ନନ୍ଦ ତାଙ୍କ ସଂସାରରେ ତାଙ୍କର ନିଜସ୍ୱ ୩ଟି ବୋଧେ ଲିମେରିକ୍ ପ୍ରକାଶ କରିଥିଲେ । ରବି ଠାକୁରଙ୍କର ବଙ୍ଗଳା ଲିମେରିକ୍ ବୋଧେ ମାତ୍ର ଦୁଇଟି ବୋଲି ମୁଁ ଜାଣିଛି । ତାଙ୍କର ଅନ୍ୟ ଲିମେରିକ୍ ଥାଇପାରେ । ରବି ଠାକୁରଙ୍କର ଲିମେରିକ୍ ଦେଖି (ଅବଶ୍ୟ ଶ୍ରୀଯୁକ୍ତ ଉଦୟନାଥ ଷଡ଼ଙ୍ଗୀଙ୍କର ଲିମେରିକ୍ ପଢିସାରିଥିଲି) ମୁଁ ଲିମେରିକ୍ ରଚନା କରିବା ଆରମ୍ଭ କରିଥିଲି । ମୋର ସର୍ବମୋଟ ୩୬ଟି ଲିମେରିକ୍ ଭିତରୁ ମାତ୍ର ତିନୋଟି ଶିଶୁଲେଖାରେ ବିକୃତ ରୂପ ନେଇ ପ୍ରକାଶ ପାଇଥିଲା । ଅନେକ ଇଂରାଜୀ ଅଧ୍ୟାପକଙ୍କୁ ପଚାରି ଲିମେରିକ୍‌ର ଇଂରାଜୀ ସଂକଳନଟିଏ ପାଇପାରିଲି ନାହିଁ । ଲିମେରିକ୍ କଣ ସେମାନେ ଜାଣିନାହାନ୍ତି କହିଲେ ।

ଆପଣଙ୍କ ରଚିତ ଏଇ ଲିମେରିକ୍‌ଗୁଡ଼ିକ ଯଥାର୍ଥରେ ସୁନ୍ଦର ହୋଇଛି । ବିନମ୍ର ନିବେଦନ କରୁଛି, ଆଉ କିଛି ରସାଳ ଲିମେରିକ୍ ଓଡ଼ିଆ ଭାଷାକୁ ଆପଣଙ୍କ ଲେଖନୀ ଉପହାର ଦେଉ ।

ସାର୍, ଓଡ଼ିଶାରେ ସ୍ୱାଧୀନତା ପରବର୍ତ୍ତୀ ଦଶନ୍ଧି ଗୁଡ଼ିକରେ ଶିଶୁସାହିତ୍ୟ ଓ ଶିଶୁସାହିତ୍ୟିକଙ୍କ ଉନ୍ନତି ପାଇଁ ବହୁତ କାର୍ଯ୍ୟାନୁଷ୍ଠାନ ହୋଇଗଲାଣି । ବହୁତ ସଂପାଦକ ନିଛକ ଗାଁ ଗହଳରୁ ମଧ୍ୟ ଶିଶୁପତ୍ରିକା ସଂପାଦନ କରି ଆତ୍ମପ୍ରକାଶର ପ୍ରବୃତ୍ତି ଚରିତାର୍ଥ କରି ଧିମେଇ ଗଲେଣି । ମାତ୍ର ଶିଶୁସାହିତ୍ୟ କେତେ ମାତ୍ରାରେ ଶିଶୁଙ୍କ ପାଖରେ ପହଞ୍ଚିପାରିଛି, ତାର ସର୍ବେକ୍ଷଣ ଏପର୍ଯ୍ୟନ୍ତ ହୋଇନାହିଁ । ନିଜ ଅନୁଭୂତି କହୁଛି – ମୋ

ଓଡ଼ିଆ ଶିଶୁସାହିତ୍ୟର ପ୍ରକୃତ ମୂଲ୍ୟାୟନ ସଂପାଦକମାନେ କରି ନ ପାରି ବିକୃତ କରିପକାଉଛନ୍ତି । ଉଦାହରଣସ୍ୱରୂପ ଶିଶୁଲେଖା ପାଇଁ ପଠାଇଥିବା

"ମୂଷିଆ ମିଆଁ ମୂଷେଇ ବିବି
ନିମ ଚଉଡ଼ିରୁ କିଣିଲେ ଟିଭି
ନାଚେ ବିଲେଇ
ନିଶ ଫୁଲେଇ
ମୂଷିଆ କହେ ମୁଁ ହଗିତେ ଯିବି"କୁ

"ମୂଷିଆ ମିଆଁ ମୂଷେଇ ବିବି
ନିମଚଉଡ଼ିରୁ କିଣିଲେ ଟିଭି
ନାଚେ ବିଲେଇ
ନିଶ ଫୁଲେଇ
ମୂଷିଆ କହେ ମୁଁ କିଣିବି ଟିଭି"

କରି ପ୍ରକାଶ କରାଗଲା । ଏମିତି ଅନେକ ଅତ୍ୟାଚାର ଭିତରେ ନିଜେ ହୀରାଫୁଲ ନାମରେ ପତ୍ରିକାଟିଏ ସଂପାଦନା କଲି । ତା ଭିତରେ ବି ପୋକ ପଶି କାଟିଲେ । ତାକୁ ବନ୍ଦ କରିବା ପରେ ମନ ନ ମାନିବାରୁ ମାତ୍ର ୪୦ ପଇସାର ପତ୍ରିକାଟିଏ କଲି - ଇନ୍ଦ୍ର । ତାର ସଂପ୍ରସାରଣ ହୋଇ ନ ପାରି ବନ୍ଦ ହୋଇଯିବା ପରେ ଏହାର କାରଣ ଅନୁସନ୍ଧାନ କଲି — ଶିଶୁଙ୍କ ପାଖରେ ଶିଶୁସାହିତ୍ୟକୁ ପହଞ୍ଚାଇବାର ଉପାୟ ବିଦ୍ୟାଳୟ ଶିକ୍ଷକ । ଶିକ୍ଷକଙ୍କ ମାଧ୍ୟମରେ ପତ୍ରିକା ଯିବ ଓ ଅଭିଭାବକ ମୂଲ୍ୟ ଦେଇ କିଣିବ ।

ଯା ଭିତରେ ୮୫ରୁ ୯୬ — ଗୋଟେ ଦଶନ୍ଧି ଚାଲିଯାଇଛି । ପିଲାଏ ସାହିତ୍ୟ ଛାଡ଼ି TV, ଭିଡିଓ ଓ କ୍ୟାସେଟ ପ୍ଲେୟର ଯୋଗୁ ଶସ୍ତା ସଙ୍ଗୀତକୁ ଆପଣେଇ ନେଉଛନ୍ତି । ଚଳଚିତ୍ରର ହୀରୋ ସେମାନଙ୍କର ଆଦର୍ଶ । ସଂସ୍କୃତି ତାଙ୍କ ନିକଟରେ ମୂଲ୍ୟହୀନ । ଭାରତୀୟ ସାଂସ୍କୃତିକ ଐତିହ୍ୟ ଭିତରେ କେମିତି ଗୋଟେ ପ୍ରକାର

ଅଣସାଂସ୍କୃତିକ ପ୍ରଲେପ ବୋଲି ହୋଇଯାଉଛି ଯାହା ପିଲାଙ୍କୁ ଯଥେଷ୍ଟ ଆନନ୍ଦ ଦେଇ ସେମାନଙ୍କର ଚିନ୍ତା କରିବାର, ସୃଷ୍ଟି କରିବାର ସ୍ୱାଧୀନତାକୁ ନଷ୍ଟ କରି ପକାଉଛି ।

ଏ ପରିପ୍ରେକ୍ଷୀରେ ବାଲିସ୍ପାତ ଯୋଜନାର ପରିକଳ୍ପନା । ଚିନ୍ତାଶୀଳ ଲେଖକଙ୍କର ଯା ଉପରେ ପ୍ରତିକ୍ରିୟା ଜାଣିବା ପାଇଁ ସଭିଙ୍କ ନିକଟକୁ BALISPATର ସଂବିଧାନ ପୁସ୍ତିକା ପଠାଇଥିଲି । ଡଃ ଶ୍ୟାମସୁନ୍ଦର ମହାପାତ୍ର, ଡଃ କୃଷ୍ଣଚରଣ ବେହେରା, ଡଃ ପ୍ରସନ୍ନ କୁମାର ମିଶ୍ର, ଡଃ ଜୟନ୍ତ ମହାପାତ୍ର ପ୍ରମୁଖଙ୍କ ଅକୁଣ୍ଠ ସମର୍ଥନ ମୋତେ ଏ ଦିଗରେ ଅଧିକ ଉତ୍ସାହିତ କରିଛି ।

ଆଗାମୀ ପୂଜାଛୁଟିରେ BALISPATର ପ୍ରଥମ ତିନିଦିନିଆ କର୍ମଶାଳା ଅନୁଷ୍ଠିତ ହେବ । ଶିଶୁମାନେ ଚଳଚିତ୍ର ଅଭିନେତାଙ୍କ ଫଟୋ ଦେଖି ତାଙ୍କୁ ଚିହ୍ନିବା ପରି ଲେଖକମାନଙ୍କ ଫଟୋ ଦେଖି ତାଙ୍କୁ ଚିହ୍ନିବା ଆବଶ୍ୟକ । ଏହି ଉଦ୍ଦେଶ୍ୟରେ ଲେଖକ ଫଟୋ ଗ୍ୟାଲେରିଟିଏ କର୍ମଶାଳାରେ ପ୍ରଦର୍ଶନ କରାଯିବ । ଆପଣଙ୍କ ପରି ପ୍ରତିଭାବାନ ସାହିତ୍ୟିକଙ୍କ ଫଟୋ ପିଲାଙ୍କ ପାଇଁ ଅତି ଆବଶ୍ୟକ । ଏଣୁ ଦୟାକରି ନିଜର ବ୍ୟସ୍ତ କର୍ମବହୁଳ ସମୟ ଭିତରେ ଟିକିଏ ଅବସର ଦେଖି 6"x4" ସାଇଜର ଫଟୋଟିଏ ପଠାଇବେ ।

ଆଳିମାଳିକା ବହି ଭିତରେ ଆଶା କରୁଥିଲି ଆପଣଙ୍କ ହାତର ଦିଧାଡ଼ି ଅକ୍ଷର — BALISPAT ଉପରେ ଆପଣଙ୍କ ନିଜସ୍ୱ ମତଟିଏ । ତାହା ମଧ୍ୟ ପଠାଇ ବାଧିତ କରିବେ ।

ଆପଣଙ୍କ ସହଯୋଗ BALISPATକୁ ତାର ଲକ୍ଷ୍ୟ ପଥରେ ଆଗେଇ ନେବ, ଏଇ ଆତ୍ମବିଶ୍ୱାସରେ ରହୁଛି ।

ବିନୀତ

ଶ୍ରୀ ନିରଂଜନ ବେହେରା

# ଇନ୍ଦିରା ଗୋସ୍ୱାମୀ

ଦିଲ୍ଲୀ, ୬ ମାର୍ଚ୍ଚ ୯୭

[ ମୁଁ ଦିଲ୍ଲୀ ଆସିବା ପରଠାରୁ ପ୍ରଫେସର ଇନ୍ଦିରା ଗୋସ୍ୱାମୀଙ୍କ ସହିତ ମୋର ପରିଚୟ । ବିଭିନ୍ନ ସାହିତ୍ୟ ସଭାରେ ତାଙ୍କ ସହିତ ନିୟମିତ ଦେଖା ହେଉଥିଲା । ୧୯୯୭ରେ ଦିଲ୍ଲୀ ବିଶ୍ୱବିଦ୍ୟାଳୟର Modern Indian Languages and Literary Studies ବିଭାଗରେ ସେ କୁନ୍ତଳାକୁମାରୀ ସାବତଙ୍କ ଉପରେ ଏକ ସେମିନାର କରିଥିଲେ ଏବଂ ମୁଁ ଏଥିରେ ଯୋଗ ଦେଇଥିଲି । ସେ ମୋର 'ଆହ୍ନିକ' କବିତା ବହିର ଅସମିୟା ଅନୁବାଦ କରିଥିଲେ ଯାହା ୨୦୦୧ରେ ପ୍ରକାଶିତ ହୋଇଥିଲା । ]

6.3.97

My dear J.P.,

I am sending herewith a long poem of Kuntala Kumari.

I have put your name in the Inaugural function. We had really very difficult situation because there is not enough written material on Kuntala Kumari's life and work. You have helped us a lot.

I have special affection for Orissa.

With love.

Yours sincerely,

Indira

# ମୀନାକ୍ଷି ମୁଖାର୍ଜୀ

ହାଇଦ୍ରାବାଦ, ୧୮ ମେ ୯୮ ଓ ପରବର୍ତ୍ତୀ

[ ମୀନାକ୍ଷି ଓ ସୁଜିତ ମୁଖାର୍ଜୀ ଇଂରେଜୀ ଅଧ୍ୟାପନା ଓ ଗବେଷଣା କ୍ଷେତ୍ରରେ ଜଣାଶୁଣା ନାଁ । ସେମାନେ ଦିଲ୍ଲୀରେ ଆମର ପଡ଼ୋଶୀ ଥିଲେ ଏବଂ ପରେ ଯାଇ ହାଇଦ୍ରାବାଦରେ ରହୁଥିଲେ । ସେମାନେ ଆମର ପରିବାରର ସଦସ୍ୟ ଭଳି ଥିଲେ । ମୀନାକ୍ଷି ମୋର 'ଆହ୍ନିକ' ବହିର ବଙ୍ଗଳା ଅନୁବାଦର ଏବଂ ଇଂରାଜୀରେ ଅନୁବାଦିତ ଗଳ୍ପ ସଂଗ୍ରହ 'The Will and Other Stories"ର ସୁନ୍ଦର ସମୀକ୍ଷା କରିଥିଲେ । ସେମାନେ ଦିଲ୍ଲୀରେ ଥିବାବେଳେ ଆମର ଅନେକ ସଂଧ୍ୟା ତାଙ୍କ ଘରେ ନ ହେଲେ ଆମ ଘରେ କଟୁଥିଲା ।
ତାଙ୍କର ୨୦୦୭ ଇ-ମେଲ ବର୍ଲିନରୁ ପଠାଇଥିଲେ । ସେଠାର ବିଶ୍ୱବିଦ୍ୟାଳୟରେ ସେ ରମେଶଚନ୍ଦ୍ର ଦତ୍ତଙ୍କ ଜୀବନୀ ଲେଖିବାରେ ବ୍ୟସ୍ତ ଥିଲେ । ]

Secunderabad
18.5.98

Dear J.P.,

There was a most wonderful present waiting for us when we returned to Hyderabad after out respective travels. Both of us came back together — I from Berkeley — and Sujit from Calcutta & Mumbai.

We were very touched by your dedication in सुन्दरदास, Thank You. The grouping together of four names evokes memories of many lively sessions together, about which I already feel nostalgic. I delayed writing to you by a few days because I

wanted to finish reading the play which I have now done. It is and excellent theme, and the dramatic rendering is most absorbing. I would some day like to write something on the play. But when? Doing a piece again for The Book Review may not be appropriate. Also there is the question of my qualifications for reviewing it. A play in Orissa, translated into Hindi, to be reviewed in English by a Bangla speaker — this itself sets up hurdles. Let me think. The cover is very beautifully done. Did you conceive it?

While at Berkeley I sought out Joanna Williams and had lunch with her one day in the café attached to the museum. She told me you too had gone to Berkeley this time. How was your trip on the whole? Has Mona's second child arrived? Boy or a girl? I imagine Mitra is with her now. What are you doing alone in the arid summer of Delhi? Spending most of the day at I.I.C.? Have you ever used the room in out building?

When you see (or talk to) Rajendra Yadav please convey our warm wishes to him. Hyderabad too is hot just now, but the mornings and nights are not bad — and this house is cool compared to our Delhi flat. As I wrote to you last time — we like almost everything in Hyderabad except the fact that we do not have you as a neighbour. Best wishes from both of us.

**Meenakshi**

P.S. Prasad from Jagannath Prasad is doubly welcome. Thank you.

Sujitda

Four names: ମୀନାକ୍ଷୀ ଓ ସୁଜିତ ମୁଖାର୍ଜୀ, ମନୁ ଭଣ୍ଡାରି, ରାଜେନ୍ଦ୍ର ଯାଦବ

IIC: ଦିଲ୍ଲୀର ଏକ ସଂସ୍କୃତି କେନ୍ଦ୍ର India International Centre

Secunderabad

12.11.99

Dear J.P. and Mitra,

For the last two weeks we have been thinking of you and hoping that all your relatives and friends in Orissa are safe. You must have gone through a lot of anxiety and tension. Please write to us when you can. Best Wishes.

Meenakshi

୧୯୯୯ରେ ଓଡ଼ିଶାରେ ମହାବାତ୍ୟା ହୋଇଥିଲା

Dear JP, How are things with you? How was Pujo? I have settled down to a routine of work - interrupted by two seminars a week (presented by Fellows here) and the ritual of dining together once a day. The conversation at the meal is expected to be "inter-disciplinary" which is sometimes a bit of strain specially when you are sitting between a micro-biologist and a Jewish theologian. The thirty Fellows with whom I will be

here during my stay come from many disciplines - no one from literature.

Please send me news and gossip. There is no culture of adda here and I am missing that. Everybody is too serious. Next time you are in the IIC library, please look up the recent EPW in which there is a piece titled 'Is there Dalit Writing in Bangla?' Do take a look at it if you have the time. I have a part in it.

Bijoyar bhalobasha to Mitra and you, Meenakshi

13.10.2007

## ରଡନି ପୋର୍ଟମ୍ୟାନ

ଲଣ୍ଡନ, ୧୮ ଡିସେମ୍ବର ୦୦

[ ମୋର ଆଲାହାବାଦ ବିଶ୍ୱବିଦ୍ୟାଳୟର ସହପାଠୀ ବଲବୀର ମାଥୁର ଆମେରିକାରେ ରହନ୍ତି ଏବଂ Trees for Life ନାମରେ ଏକ ସ୍ୱେଚ୍ଛାସେବୀ ସଂସ୍ଥା କରିଛନ୍ତି । ଏହି ସଂସ୍ଥା ଏସିଆ, ଆଫ୍ରିକା ଓ ଦକ୍ଷିଣ ଆମେରିକାର ଅନେକ ବିକାଶଶୀଳ ଦେଶରେ ବୃକ୍ଷରୋପଣ ଓ ଆନୁଷଂଗିକ କାମ ହାତକୁ ନେଇଛି । ମୋ ସହିତ ବଂଧୁତା ଯୋଗୁ ବଲବୀର ଭାରତବର୍ଷରେ ତାଙ୍କ କାର୍ଯ୍ୟକ୍ରମ ପାଇଁ ମୋର ସାହାଯ୍ୟ ନେଇଥାନ୍ତି ।

ଏହି ସଂସ୍ଥା ଓଡ଼ିଶାରେ ଏବଂ ବିଶେଷରେ ସମ୍ବଲପୁର ଜିଲ୍ଲାରେ ଅନେକ କାମ କରିଛି । ୧୯୯୯ର ମହାବାତ୍ୟା ପରେ ବଲବୀର ମାଥୁର ଓ ମୁଁ ଓଡ଼ିଶା ଯାଇଥିଲୁ ଏବଂ Trees for Life ପକ୍ଷରୁ ନଡ଼ିଆ ଗଛ ଲଗାଇବାର ଏକ ବିରାଟ କାର୍ଯ୍ୟକ୍ରମ ହାତକୁ ନିଆଯାଇଥିଲା ।

ପରବର୍ଷ ଲଣ୍ଡନରୁ ଏକ ଫିଲ୍ମ କମ୍ପାନୀର ତିନିଜଣିଆ ଦଳ ଓଡ଼ିଶା ଆସିଥିଲେ Trees for Life ଉପରେ ଏକ ପ୍ରାମାଣିକ ଚିତ୍ର କରିବା ପାଇଁ । ବଲବୀର ଓ ମୁଁ ସେମାନଙ୍କ ସହିତ ସମ୍ବଲପୁର ଯାଇଥିଲୁ । ଲଣ୍ଡନ ଫେରିବା ପରେ ଫିଲ୍ମ ନିର୍ଦ୍ଦେଶକ ପୋର୍ଟମ୍ୟାନ ଏ ଚିଠିଟି ପଠାଇଥିଲେ ।]

Dear JP

I have been meaning to e-mail you for the last month. I just wanted to say how excellent it was to be with you on our filming expedition. You were such a great company to all of us.

We have just had our first session with the editor. I do hope we come up with a half decent video - we are certainly doing our best and Simon is a splendid person to work with. Like Balbir and you, we have been friends for *over 30 years!*

Simon, Loulou and I all hope that you will stop off in London one of these days when you are en route to the USA. Please try as we could have a good get together. Perhaps you would enjoy a visit to Stratford which is close to our house in the country.

Please give me details of your poetry publications - I would greatly enjoy reading some more after the one poem you gave me.

I hope we will be in contact over TFL and matters educational. In the meantime all best wishes and it has been a great pleasure meeting you.

Rodney

Mon, 18 Dec. 00

# ପଠାଣି ପଟ୍ଟନାୟକ

କଟକ, ୨୭ ଫେବୃୟାରୀ ୦୧

[ ସୁସାହିତ୍ୟିକ ପଠାଣି ପଟ୍ଟନାୟକ ୧୯୫୧ରେ କିଛି ଦିନ ପାଇଁ କଟକର କ୍ରାଏଷ୍ଟ କଲେଜରେ ଅଧ୍ୟାପନା କରୁଥିଲେ ଓ ସେଠାରେ ମୋ ବାପାଙ୍କର ସହକର୍ମୀ ଥିଲେ । ମୁଁ ସେତେବେଳେ ସେଠାରେ ଇଣ୍ଟରମିଡିଏଟ ପଢୁଥିଲି । ଏହି ସୂତ୍ରରେ ସେ ଆମର ପାରିବାରିକ ବନ୍ଧୁ ଥିଲେ । ସେତେବେଳେ ତାଙ୍କର ମାର୍ଗଦର୍ଶନରେ 'ଅଭ୍ୟୁଦୟ ସାହିତ୍ୟ ସମିତି' ନାମକ ଏକ ଅନୁଷ୍ଠାନ ଥିଲା ଓ ମୁଁ ସେଥିରେ ସଂପୃକ୍ତ ଥିଲି ।

ସେ ଓଡ଼ିଆ ସାହିତ୍ୟ ଏକାଡେମିର ସଭାପତି ପଦ ପାଇବା ପରେ ବୋଧହୁଏ ମୁଁ ତାଙ୍କ ପାଖକୁ ଯେଉଁ ଚିଠି ଲେଖିଥିଲି ଏଇଟି ତାର ଉତ୍ତର । ]

୨୭ ।୨ ।୨୦୦୧
କଟକ-୮

ପ୍ରିୟ ଜଗନ

ପ୍ରଭୁ ଜଗନ୍ନାଥ ମଙ୍ଗଳ କରନ୍ତୁ । ତୁମର ୧୫ ।୧ ।୨୦୦୧ର ଚିଠିର ଉତ୍ତର ଆଜି ଦେଉଛି । ଏଥିପାଇଁ ମୁଁ ଅତ୍ୟନ୍ତ ଲଜ୍ଜିତ । ଜୀବନରେ ମୁଁ ଅତ୍ୟନ୍ତ ଏକୁଟିଆ । ପରିବାରରେ ମଧ୍ୟ । ଖୁବ୍ କମ୍ ଲୋକଙ୍କ ସହିତ ସହଜ ଭାବରେ ମିଶିପାରିଛି । ମୋର ସ୍ୱଭାବସୁଲଭ ଗାମ୍ଭୀର୍ଯ୍ୟ ପାଇଁ ମଧ୍ୟ ଏକ ବଦନାମ କେଉଁକାଳୁ ରହିଛି । ଏ ସବୁ ସତ୍ତ୍ୱେ ଏକାଡେମୀର ଆସନ ଏବଂ ସାହିତ୍ୟଭାରତୀ ସମ୍ମାନ ଲାଭ କଲା ପରେ ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳରୁ ଅନେକ ଚିହ୍ନା ଏବଂ ଅଜଣାଙ୍କଠାରୁ ଶ୍ରଦ୍ଧାଯୁକ୍ତ ଦୂରଭାଷ ସଂପର୍କ ଅଥବା ଚିଠି ପାଇଲା ପରେ ଅନୁଭବ କରୁଛି ବହୁ ଲୋକଙ୍କର ସ୍ନେହ, ଶୁଭେଚ୍ଛା ଓ ଆଶୀର୍ବାଦର ମୁଁ ଅଧିକାରୀ ହୋଇଯାଇଛି । ଜୀବନର ସଂଧ୍ୟାକାଳରେ ସ୍ୱଭାବଧର୍ମୀ ଏକାକୀ ଜୀବନରେ ଏହା ଚରମ ତୃପ୍ତିକର ନିଶ୍ଚୟ । ୧୯୫୨ ସାଲର ପ୍ରଥମ ଭାଗରେ ବୋଧହୁଏ ତୁମର କୈଶୋର ବନ୍ଧୁମାନଙ୍କ ସହିତ ଉଠିଥିବା ଗୋଟିଏ ଫଟୋ ମୁଁ ସାଇତି ରଖିଛି । ପ୍ରଥମ ଧାଡ଼ିରେ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ, ଶ୍ରୀନିବାସ ମିଶ୍ର, ମୁଁ ଏବଂ ଅଧ୍ୟାପକ ଶ୍ରୀଧର ଦାସ ବସିଛୁ ।

ପଛରେ ଦଣ୍ଡାୟମାନ କୈଳାସ ଦାସ, ବିବେକାନନ୍ଦ ଦାସ, ରାମନାରାୟଣ ହୋତା, ତୁମେ ଏବଂ ସୁଧାଂଶୁ ରାଉତରାୟ । ସମୟ ଚକ୍ରରେ କିଏ ଆଜି କେଉଁଠାରେ । ବାନାମ୍ବରବାବୁ ଏବଂ ଶ୍ରୀଧର ବାବୁ ଆଜି ସେ ପୁରରେ । ରାମନାରାୟଣ ଓ ସୁଧାଂଶୁଙ୍କ ଜୀବନ ଆଜି ଅସ୍ତମିତ । ତୁମେ ଅନ୍ୟ ତିନିଜଣ ଅବସରପ୍ରାପ୍ତ । ଏମାନଙ୍କ ମଧ୍ୟରେ ତୁମେ ହିଁ କେବଳ ସାରସ୍ୱତ କ୍ଷେତ୍ରକୁ ଆଦରି ରହିଚ । ସତୀଚଉରା ଶ୍ମଶାନରେ ଆମେ ସେହି ବୟସରେ ଅଭ୍ୟୁଦୟ ସାହିତ୍ୟ ଆଲୋଚନା ଆରମ୍ଭ କରିଥିଲେ । ୪ ମାସର ଅଧ୍ୟାପକ ରହି ମାତୃଭୂମି ସଂପାଦନାକୁ ଚାଲି ଆସିଥିଲେ ମଧ ପ୍ରାକ୍ତନ ଛାତ୍ରମାନେ ମୋତେ ସ୍ନେହରେ ଲୋଡୁଥିଲେ ଅନୁଷ୍ଠାନଟି ଆରମ୍ଭ କରିଥିବାରୁ । ପରେ ଅବଶ୍ୟ ଏହି ନାମରେ ଏକ ସାହିତ୍ୟ ଅନୁଷ୍ଠାନ ପ୍ରତିଷ୍ଠା କରି ଛାତ୍ରମାନଙ୍କ ସହିତ କେତେକ ମୂଲ୍ୟବାନ ପୁସ୍ତକ ପ୍ରକାଶ କରାଇଥିଲି । ସବୁ ଆଜି ଇତିହାସ । ଆନ୍ତରିକ ଶୁଭେଚ୍ଛା ସହିତ । ଶୁଭାକାଂକ୍ଷୀ,

ପଠାଣି ପଟ୍ଟନାୟକ

# ସୁଜିତ ମୁଖାର୍ଜୀ

ହାଇଦ୍ରାବାଦ, ୨୯ ନଭେମ୍ବର ୦୨

[ ସୁଜିତଦା ଦିଲ୍ଲୀରେ ଆମ ସମସ୍ତଙ୍କ ପାଇଁ ସାହିତ୍ୟ ସମ୍ବନ୍ଧୀୟ ଏକ ଚଳନ୍ତି ଏନସାଇକ୍ଲୋପିଡିଆ ଭଳି ଥିଲେ । ମୋର କୌଣସି ବିଷୟରେ ସନ୍ଦେହ ହେଲେ ତାଙ୍କ ପାଖକୁ ଯାଉଥିଲି ନ ହେଲେ ତାଙ୍କର A Dictionary of Indian Literatureର ସାହାଯ୍ୟ ନେଉଥିଲି । ସେ ସବୁବେଳେ ହାତରେ ଚିଠି ଲେଖି ପଠାଉଥିଲେ ଏବଂ ନିୟମିତ ଚିଠି ଲେଖୁଥିଲେ । ]

29th November 2002

Dear Jagannath,

Your letter (by e-mail) of 5th November was followed by copies of ଦେଶ କାଳ ପାତ୍ର and Pukka Sahib & Other Stories. I have to admit that D/K/P reads meet better in print than it did

in the print-outed (my innovation!) sample chapters you showed me once. I have read about 100 pages so far, having to share the book with Meenakshi. As for Pukka Sahib, the stories are uniformly well-translated, as they would be, in Bikram's hands. But why do I get the impression that some three or four of them I have read earlier. Have they been newly translated? And is Interview the one I saw dramatised on television many years ago?

I am glad you still appreciate handwritten letters and will always write to you in longhand, though I can see my longhand is getting more and more illegible as time passes.

In case you have wondered why it has taken me so long to get back to you, the reason is largely medical. During Dasera I cought a cold which developed into dry cough and brought about some bronchial congestion which led to bouts of breathlessness. Our familty doctor here (who has known us since 1983) finally gave up and referred me to our cardiologist, who decided to hospitalise me for a few days so that he could check me out thoroughly. I was released last Wednesday and have been advised to take things easy for some time. Which I am doing as well as I can! Only, my somewhat 'nazuk' condition places unfair restrictions in Meenakshi's movements out of Hyd'bad. She has had to cancel at least two meeting/ seminar appearances next month and there is nothing I can do to make up for this. But at least her Bangla book is ready and Samik B. assures of release at the 2003 Kolkata Book

Fair, While her translation of the Late Lokenath Bhattacharya's ବାବୁଘାଟେର କୁମାରୀ ମାଛ revised and with a longish introduction by MM — has been enthusiastically accepted by Mini Krishnan. I now learn that Lokenath was an accomplished singer but we never heard him sing. We did hear him read out ଘର at the house of a common friend in Gr. Kailash. Am I imagining this but you were also present that evening.

Yes, Nirmalkanti is doing a good job in Indlit. How can I not speak well of him when he got "Blood at Sunset", lying unpublished nearly as long as the time between Vasco da Gama's first visit and now, into print at last.

Since it is unlikely I shall visit Delhi again soon, what about your wangling some sarkari trip, fair paid, to Hyd'bad. Until that happens, don't forget to take Mitra once a week to Chittaranjan Park for fish, saag, bodi and other items of civilisation that make life liveable — even in Delhi.

All the best

from

Sujit da

P.S. Can you send or get for me the full text of that poem by the Pakistani woman poet (Fahmida Riaz?) which she wasn't allowed to recite at a mushaira organised by JNU students. The poem addressed to Bharat, begins something like this. "So you too are no better than us..."

Bikram: ଅଧ୍ୟାପକ ବିକ୍ରମ ଦାସ

Samik B: ବଙ୍ଗଳା ଲେଖକ ଶମୀକ ବନ୍ଦୋପାଧ୍ୟାୟ
Nirmal Kanti: ନିର୍ମଳକାନ୍ତି ଭଟ୍ଟାଚାର୍ଯ୍ୟ
Blood at Sunset: ଭାସ୍କୋ ଡା ଗାମାଙ୍କୁ ନେଇ ଏକ ବଙ୍ଗଳା ଗଳ୍ପର ସୁଜିତ ମୁଖାର୍ଜୀକୃତ ଅନୁବାଦ

# ପଲ ସଁପିଏ

## ମଣ୍ଟ୍ରିଅଲ (କାନାଡା), ୧୮ ସେପ୍ଟେମ୍ବର ୦୩

[ କାନାଡା ମଣ୍ଟ୍ରିଅଲ ବିଶ୍ୱବିଦ୍ୟାଳୟ ଅନୁବାଦ ବିଭାଗର ଅଧ୍ୟାପକ ପଲ ପ୍ରାୟ ପନ୍ଦର ବର୍ଷ ହେଲା ଓଡ଼ିଶାକୁ ଆସୁଛନ୍ତି, ଏବଂ ସ୍ଥାନୀୟ ଅନୁବାଦକମାନଙ୍କର ଅନେକ ଓଡ଼ିଆ ବହିର ଇଂରେଜୀ ଅନୁବାଦରେ ସହଯୋଗ କରିଛନ୍ତି । ପଲ୍‌ଙ୍କ ସହିତ ମୋର ପ୍ରଥମ ପରିଚୟ ହୋଇଥିଲା ଭୁବନେଶ୍ୱରରେ । କିଛି ବର୍ଷ ପରେ ରବୀନ୍ଦ୍ର କୁମାର ସ୍ୱାଇଁ ମୋର 'ପ୍ରିୟ ବିଦୂଷକ' ବହିକୁ ଅନୁବାଦ କରିବା ବେଳେ ପଲ୍‌ଙ୍କର ସହଯୋଗ ଚାହିଁଥିଲେ । ରବୀନ୍ଦ୍ର ତାଙ୍କର ଅନୁବାଦକୁ ପଲ୍‌ଙ୍କ ପାଖକୁ ପଠାଉଥିଲେ; ପଲ୍ ତାକୁ ସଂଶୋଧନ କରି ମୋ ପାଖକୁ ପଠାଉଥିଲେ ଓ ମୁଁ ତା ଉପରେ ମୋର ଟିପ୍ପଣୀ ଦେଉଥିଲି । ଏ ଭଳି ଭାବରେ ଏଇ ବହିଟିର ଅନୁବାଦରେ ଅନେକ ସମୟ ଲାଗିଥିଲା, ଏବଂ ଶେଷରେ ଏହାକୁ 'ରୂପା' ପ୍ରକାଶ କରିଥିଲେ 'Dear Jester' ନାଁରେ । ମୋ ମତରେ ରବି ଏବଂ ପଲ୍‌ଙ୍କ ଅନୁବାଦିତ ବହିଟି ଏକ ସଂପୂର୍ଣ୍ଣ ସଫଳ ଅନୁବାଦ ଥିଲା । ]

18 September 2003

Dear J.P.,

Thanks for the message – I'll let you respond to Rabi but will send him a copy of the introduction, probably tomorrow. As for Rupa, I haven't heard from them – but perhaps their message went into my junk mail box and I deleted it without looking at it (there are about 60 junk mail messages a day).

There's no problem with my authorizing you to take care of contractual aspects – should I send you a separate e-mail to that effect? Though I would also like to have official confirmation from them (by e-mail would do) that the translation will be published (just in case I put in another grant application, which is possible but unlikely).

The question of what consitutes part of the translation process, and its realtion to writing, is interesting one, which various people have dealt with over the years. More and more it seems clear that the distinction betwen the two doesn't hold up (some writing takes place across a variety of languages, some translation involves rewriting). I think it would be somewhat ironic if the position was taken that translation is only the part of the process which actually involves changing languages. In the case of Dear Jester it would mean that Rabi Swain produced a translation, and you and I edited or perhaps rewrote the text. It would make more sense, I think, to see the process going from original to the production of a text in a different language, as all part of the translation process. But I won't bore you with this.

All the best,

Paul

# ୟାସମିନ ଗୁଣରତ୍ନେ

ଅଷ୍ଟ୍ରେଲିଆ, ୧୭ ଏପ୍ରିଲ ୦୪

[ ଶ୍ରୀଲଙ୍କାର ୟାସମିନ ଅଷ୍ଟ୍ରେଲିଆର ମାକ୍କେରି ବିଶ୍ୱବିଦ୍ୟାଳୟରେ ଇଂରେଜୀ ଅଧ୍ୟାପକ ଓ ଜଣାଶୁଣା ଉପନ୍ୟାସ ଲେଖିକା । ସେ ଓ ତାଙ୍କର ସ୍ୱାମୀ ବ୍ରେଣ୍ଡନ ୧୯୯୮ରେ ଆମର ପଡ଼ୋଶୀ ମୀନାକ୍ଷି ମୁଖାର୍ଜିଙ୍କର ଅତିଥି ଥିବା ବେଳେ ତାଙ୍କ ସହିତ ପରିଚୟ ହୋଇଥିଲା, ଓ ମୁଁ ସେମାନଙ୍କୁ ଦିଲ୍ଲୀର ଉପକଣ୍ଠରେ ଓ.ପି. ଜୈନ କରିଥିବା 'ସଂସ୍କୃତି ସଂସ୍ଥାକୁ ନେଇ ଯାଇଥିଲି । ]

Dear JP,

Meenakshi, to whom I am copying this message, has been in correspondence with me regarding the forthcoming ACLALS Conference in Hyderabad, in the organisation of which she is heavily involved. Unfortunately, I have had to give up my plans of travel to India this year, to Hyderabad, to Delhi, and also to visit the shrines of Buddhist importance in north India, a trip which a University friend of mine was planning for us both.

However, Meenakshi mentioned you, and your new book of short stories, in one of her letters, which reminded me of something I always wanted to tell you but never did: that your story "Folk Culture" in your last collection was a great favourite, not only with me, but with my students at Macquarie when I put it on our text list in 1999. I'm very glad I have been able to send you "Masterpiece & Other Stories" as a way of thanking

you for your gift, and hope "Dear Jester" - a very promising title! - has found responsive readers.

I seem to have adopted the custom of spending 4-6 weeks in Sri Lanka twice a year, in January and June, the second stay timed to coincide with the arrival of the year's Residential Scholars at Pemberley. (This is the Study Centre Brendon established in 1999, following his visit to India, when you very kindly introduced him to Mr O.P. Jain's brain-child near Delhi. Pemberley is flourishing, I'm glad to say, and doing well.) You could, maybe, some day soon, come to visit, perhaps with Meenakshi, who, as a member of Pemberley's board of experts, has a standing invitation.

I hope you have enjoyed reading "Masterpiece", and went further than the postcolonial love story. The book's title story, by the way, was inspired by a wonderful train journey to Hyderabad and back that I undertook with Meenakshi and five of her colleagues from JNU and Delhi University while I was in Delhi in 1995.

With best wishes,

Yasmine

# ମେଘନା ଗୁଲଜାର

ବମ୍ବେ, ୨୬ ଅକ୍ଟୋବର ୦୪

[ କୌଣସି ବହି ପ୍ରକାଶ ପାଇବା ବେଳେ ତାର କଭର ଡିଜାଇନ କରାଇବା ଏକ ବିଶେଷ ସମସ୍ୟା । ବହି ଛପା ସରିବା ପରେ କଭର ତିଆରି ହୋଇ ନ ପାରିବା ଯୋଗୁ ମାସ ମାସ ଧରି ବହି ବଜାରକୁ ଆସିପାରେ ନାହିଁ । ଓଡ଼ିଶାର ପ୍ରକାଶକ ଓ ଲେଖକମାନଙ୍କର ସବୁବେଳେ ଏ ବିଷୟରେ ଅଭିଯୋଗ ଥାଏ ।

ମୋର ସୌଭାଗ୍ୟକୁ ୧୯୯୨ରେ ପ୍ରକାଶିତ ମୋର 'ସ୍ୱପ୍ନ ବିଚାର' ବହି ପାଇଁ ମେଘନା ଗୁଲଜାର ଗୋଟିଏ କଭର ଡିଜାଇନ କରି ଦେଇଥିଲେ । ୨୦୦୫ରେ ମୁଁ ମୋର Dark Times ବହି ପାଇଁ ମଧ୍ୟ ତାଙ୍କର ସାହାଯ୍ୟ ନେଇଥିଲି । ଦୁଇଟିଯାକ ବହିର ପ୍ରଚ୍ଛଦ ବିଶେଷ ଆଦୃତ ହୋଇଥିଲା । ]

26th October 2004

Dear J P Uncle,

I received your text and other information for your book, **Dark Times**. I am however yet to receive the resolution specifications from you.

In the interim, I have put all the material on a cd and send it with Papa who is to be in Delhi on the 31st. The images will be at resolution 300 dpi, which is safe and can be modified as per the publishing requirements.

The prelim pages layouts are on a program called Adobe Pagemaker, which is what is mostly used for publications. I would like to mention here, that I am not too proficient on the

software and have only done the layouts with a primarily aesthetic perspective.

The technical fine-tuning will have to be done by a proper professional layout artist, perhaps from your publishing house itself.

I request you to kindly pass all the material through the relevant qualified professional before going in for publication.

I hope you like my effort. If there is anything else I can do, please let me know.

With fond regards,

Meghna

## ମରିସିଓ ଆଗୁଇଲେରା

ଗ୍ରାନାଡା (ସ୍ପେନ), ୩ ଜାନୁୟାରୀ ୦୭

[ ସ୍ପେନର ଇଂରେଜୀ ଅଧ୍ୟାପକ ମରିସିଓଙ୍କୁ ଓଡ଼ିଆ ସାହିତ୍ୟ ସହିତ ପରିଚିତ କରାଇଥିଲେ ସୁମନ୍ୟୁ ଶତପଥୀ । ଏହା ପରେ ମରିସିଓ କିଛି ଓଡ଼ିଆ ଗଳ୍ପର ସ୍ପେନିଶ ଅନୁବାଦ କରିବାରେ ହାତ ଦେଇଥିଲେ । ତାଙ୍କର ଓଡ଼ିଆ ଗଳ୍ପ ସଂକଳନଟି ନିକଟରେ ପ୍ରକାଶ ପାଇଛି ।

ଏ ଚିଠି ଲେଖି ମରିସିଓ ଦିଲ୍ଲୀକୁ ଆସିବା ବେଳେ ମୁଁ ଓଡ଼ିଶାରେ ଥିଲି ଓ ଆମର ସାକ୍ଷାତ ହୋଇ ନ ଥିଲା । ]

Dear JP,

So bad that you are heading east when I am leaving for Delhi. I hope that next time we may talk face to face.

What I really loved about your writing is precisely something I try to achieve – mostly in vain – when I write: there is a pervasive feeling of homelessness and transience which define the best of your characters and which give your short stories a Hemingway-like touch. There is a story by Tennessee Williams (Ten Minute Stop) which was brought back to mind when I read that character, the bookseller who lives on trains. The symbolic overtones of your stories overlap those of my favourite writers (Senapati, Mohanty, Kishori Charan Das, you) are in tune with my sensitivity and their work manages to arouse whatever there is within. With some others I haven't been so successful: the short stories did not bring about any response (either positive or negative) so I guess this is mostly my fault, or maybe the translation failed. But I insist I am just beginning to read and I will have to go over everything in a more careful manner.

I do not take up more of your precious time. Let's keep in touch, and again thank you.

Mauricio Aguilera

3 January 2007

# ଶେଲ୍‌ଡନ ପୋଲ୍ଲକ

## ନିଉୟର୍କ, ୧୯ ମେ ୧୦

[ ଇଂରେଜୀ ଆଉଟଲୁକ ପତ୍ରିକାର ମେ ୧୦ ତାରିଖ ସଂଖ୍ୟାରେ ଏକ ସଂବାଦ ପ୍ରକାଶ ପାଇଥିଲା ଯେ କୋଟିପତି ନାରାୟଣ ମୂର୍ତ୍ତିଙ୍କ ସହାୟତାରେ ଏକ କ୍ଲାସିକାଲ ଲାଇବ୍ରେରୀ ସିରିଜ ବାହାର କରାଯିବ, ଯାହାର ସଂପାଦନା କରିବେ କଲମ୍ବିଆ ବିଶ୍ୱବିଦ୍ୟାଳୟର ଭାରତବିତ୍ ଶେଲ୍‌ଡନ ପୋଲ୍ଲକ । ଏହି କ୍ଲାସିକ ତାଲିକାରେ ପଂଜାବୀ, ତେଲୁଗୁ, ବଂଗଳା, ଗୁଜରାଟୀ ବହିର ନାଁ ଥିଲା, ଓଡ଼ିଆର ନ ଥିଲା ।

ମୁଁ ପ୍ରଫେସର ପୋଲ୍ଲକଙ୍କୁ ଏକ ଦୀର୍ଘ ଇ-ମେଲ ପଠାଇ ଏ ତାଲିକାରେ ଓଡ଼ିଆ କ୍ଲାସିକ ମଧ୍ୟ ରଖାଯାଉ ବୋଲି ଲେଖିଥିଲି । ଅଳ୍ପ ସମୟ ଭିତରେ ତାଙ୍କ ଅଫିସରୁ ଉତ୍ତର ଆସିଲା ଯେ ପ୍ରଫେସର ପୋଲ୍ଲକ ବାହାରକୁ ଯାଇଥିବାରୁ ସେ ଫେରିଲେ ହିଁ ମୋର ଇ-ମେଲ ଦେଖିପାରିବେ । କିନ୍ତୁ ପୁଣି ଦୁଇ ଘଣ୍ଟା ପରେ ପ୍ରଫେସର ପୋଲ୍ଲକଙ୍କର ଏହି ଉତ୍ତରଟି ଆସିଲା । ]

Dear Dr. Das,

Thank you very much for your note and kind words. The list of languages in the Outlook article was meant merely to be a sample of the riches available in Classical Indian Literatures, not an indication that we are restricting our programme in any way. We are certainly interested in Oriya for the very reasons you cite, and are already seriously considering commissioning a translation of Sarala Das.

Yours sincerely,

Sheldon Pollock
19.5.2010

ଗଭୀର ରାତେ ଜଳ ପାଇଲେ
ନିଜର ବୟସ ବଢ଼ିଲା ପରି
ଲାଗେ ନାଇଁ ~ ନୁହଁ, କେମି?

ଜୟନ୍ତ ମହାପାତ୍ର
ମଇ ୧୯, ୨୦୧୦

# ପରିଶିଷ୍ଟ

## କର୍ମସ୍ଥଳ

| | |
|---|---|
| ୧୯୩୬ - ୪୮ | ବାଣପୁର ଜନ୍ମ; ସ୍କୁଲ (ପିତାମାତା: ଶ୍ରୀଧର ଦାସ, ଇନ୍ଦୁ ଦେବୀ) |
| ୧୯୪୮ - ୫୫ | କଟକ ମିଶନ ସ୍କୁଲ, କ୍ରାଏଷ୍ଟ କଲେଜ, ରେଭେନଶା କଲେଜ |
| ୧୯୫୫ - ୫୮ | ଆଲାହାବାଦ ବିଶ୍ୱବିଦ୍ୟାଳୟ ଏମ୍.ଏ; ଅଧ୍ୟାପନା |
| ୧୯୫୮ - ୫୯ | ଦିଲ୍ଲୀ ଆଇ.ଏ.ଏସ୍. ଟ୍ରେନିଂ |
| ୧୯୫୯ - ୬୧ | ଛତ୍ରପୁର, କୋରାପୁଟ, ଦଶରଥପୁର ଟ୍ରେନିଂ |
| | ରାଉରକେଲା ଏସ୍‌ଡିଓ |
| ୧୯୬୧ - ୬୩ | ଭୁବନେଶ୍ୱର ସଚିବାଳୟ |
| ୧୯୬୩ - ୬୬ | କଳାହାଣ୍ଡି କଲେକ୍ଟର |
| ୧୯୬୬ - ୬୮ | ଭୁବନେଶ୍ୱର ସଚିବାଳୟ |
| ୧୯୬୮ - ୭୦ | କଟକ ଡାଇରେକ୍ଟର, ଇଣ୍ଡଷ୍ଟ୍ରିଜ |
| ୧୯୭୧ - ୭୩ | ଭୁବନେଶ୍ୱର ସଚିବାଳୟ |
| ୧୯୭୩ - ୭୮ | ଦିଲ୍ଲୀ କେନ୍ଦ୍ର ସଚିବାଳୟ |
| ୧୯୭୮ - ୭୯ | ଦିଲ୍ଲୀ ଆଇ ଆଇ ପି ଏରେ ପାଠ |
| ୧୯୭୯ - ୮୧ | ଦିଲ୍ଲୀ ଓ ଓଡ଼ିଶା ଗବେଷଣା |
| ୧୯୮୧ - ୮୩ | ଦିଲ୍ଲୀ ଓଡ଼ିଶା ଭବନ ଆବାସିକ କମିଶନର |
| ୧୯୮୪ - ଏପର୍ଯ୍ୟନ୍ତ | ଦିଲ୍ଲୀ |

## ଅନୁଷ୍ଠାନ ସଂପର୍କ

| | |
|---|---|
| ନେହେରୁ ସେବା ସଂଘ, ବାଣପୁର | ୧୯୫୦- |
| କଳାବିକାଶ କେନ୍ଦ୍ର, କଟକ | ୧୯୬୮ - ୭୩ |

| | | |
|---|---|---|
| ଓଡ଼ିଶା ଗ୍ରାମ ବିକାଶ ଫାଉଣ୍ଡେଶନ | ୧୯୭୮ - ୮୨ | |
| ଏସିଆନ୍ ଗେମ୍‌ସ ଆର୍ଟ କମିଟି | ୧୯୮୨ | ସଭ୍ୟ-ସଂପାଦକ |
| ବ୍ରିଜ୍ ଫର୍ ଲାଇଫ୍ | ୧୯୮୨ - | |
| ଫେଷ୍ଟିଭାଲ ଅଫ ଇଣ୍ଡିଆ | ୧୯୮୩ - ୮୬ | ପରାମର୍ଶଦାତା |
| ଶିଶୁ ଚଳଚ୍ଚିତ୍ର ସମିତି | ୧୯୮୪ - ୯୦ | |
| ପୋଏଟ୍ରି ସୋସାଇଟି, ଇଣ୍ଡିଆ | ୧୯୮୪ - | ସଭାପତି ୧୯୯୦-୨୦୦୦ |
| ଇନ୍‌ଟାକ୍ | ୧୯୮୪ - ୯୪ | ଓଡ଼ିଶା ପରାମର୍ଶଦାତା |
| ମାନୁଷୀ ଟ୍ରଷ୍ଟ | ୧୯୯୧ - | |
| ନ୍ୟାଶନାଲ ସ୍କୁଲ ଅଫ ଡ୍ରାମା | ୧୯୯୪ - ୨୦୦୦ | ଉପସଭାପତି |
| ଉତ୍କଳ ବିଶ୍ୱବିଦ୍ୟାଳୟ ସିଣ୍ଡିକେଟ | ୧୯୯୬ - ୯୯ | |

# ଲେଖକ ସୂଚୀ

